


ନବ କିଶୋର ମହାରଣା

# ରାଣୀ ଶୁକଦେଈ

ଲେଖକ :

**କବିକେଶରୀ ନବକିଶୋର ମହାରଣା**

ବ୍ରହ୍ମପୁର, ବାଙ୍କୀ—୭୫୪୦୦୮

ପ୍ରକାଶକ :

**ଲୋକନାୟକ କ୍ଲବ୍**

ଚାଟପୁର, ବାଙ୍କୀ

ପ୍ରଚ୍ଛଦପଟ୍ଟ :

**ବରଦା ପ୍ରସନ୍ନ ସାମନ୍ତସିଂହାର**

ମୁଦ୍ରଣ :

**ମହର୍ଷି ପ୍ରିଣ୍ଟିଙ୍ଗ୍ ପ୍ରେସ**

କଲେଜ ଛକ, ବାଙ୍କୀ

ପ୍ରଥମ ମୁଦ୍ରଣ :

ଶ୍ରୀଗୁଣ୍ଡିଚା, ୧୯୯୫

ମୂଲ୍ୟ ଟ୧୪-୦୦









# ଜାତୀୟ ଦେବତାଙ୍କ ପାଦତଳେ
# ସମର୍ପଣ କୁସୁମ

୧୮୬୭ ଉଦୟ ହେବାରୁ ୧୯୨୮ର ଅସ୍ତଗାମୀ ଓଡ଼ିଆ ଜାତିର ଅଦ୍ୱିତୀୟ ସୃଷ୍ଟି, ବିଚ୍ଛିନ୍ନ ଉତ୍କଳର ନବନିର୍ମାଣ କର୍ତ୍ତା ଐତିହାସିକ ପୁରୁଷକେଶରୀ ଓଡ଼ିଆ ଜାତି ସୀମାନର କର୍ମୀ ମା କାଳଜୟୀ ସାହିତ୍ୟ ସାଧକ ଏକେଶ୍ୱରୁ ନିର୍ଭୀକ ଚଳମ୍ବନକାରୀ, ଜାତୀୟ ଜୀବନର କର୍ଣ୍ଣଧାର ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ତଥା ଓଡ଼ିଆ ଭାଷାର ରକ୍ଷକ, ବର୍ଣ୍ଣବୋଧକ, କବିତାକଲାପ, ଚାଟାଖ୍ୟ ଯୁକ ଉଦ୍ଦନାକାଙ୍କ୍ଷୀ ଦୁଇଶହ ଷାଠିଏ ଖଣ୍ଡ ଗ୍ରନ୍ଥର ଲେଖକ, ପଣ୍ଡିତ ଗୋବିନ୍ଦ ରଥ ୧୮୯୮ ଠାରୁ ୧୯୧୮ ମଧ୍ୟରେ ଗ୍ରାମ୍ୟ ଦୁର୍ଗତି ନିବାରଣ ବନ୍ୟ ଭାଷାକୁ ଓଡ଼ିଶାରୁ ବହୁଗତ ବନ୍ଧୁ, ସ୍ୱଦେଶୀ ଶାସନ ବରୁଦ୍ଧରେ, ଯିଉଚର ସାହେବ ଗ୍ରନ୍ଥର ଲେଖକ ଜାତୀୟ କଣ୍ଠଦର୍ପା, ଅମର ମଣିତ, ଦୁଇଜଣଙ୍କ ପବିତ୍ର ସ୍ମୃତି ସଂକଳ୍ପରେ ବାଣୀଶ୍ରୀକଳେବର ଗ୍ରନ୍ଥ ଉତ୍ସର୍ଗୀକୃତ କରାଗଲା ।

ଶ୍ରୀଗୁଣ୍ଡିଚ୍ର ୧୯୯୫



# ରାଜାସାମନ୍ତ ଶ୍ରୀଶ୍ରୀ ନାରାୟଣ ଶ୍ରୀଚନ୍ଦନ ମହାପାତ୍ରଙ୍କ ପ୍ରତି

ସୁବର୍ଣ୍ଣର ସିଂହାସନରୁ ଧୂଳିମାଟିର ସନ୍ଥ, ହୀରକ ମୁକୁଟ ଦଳ କାଳିଚକୁ ଗୁନ୍ଥ ॥
ରାଜା ପ୍ରଜାସାମ୍ୟଗିଣ୍ଠି ନୃପତି ବଶଷ୍ଟେ,
ପ୍ରଜାତନ୍ତ୍ରେ ସେବାସିଦ୍ଧି, ନାହିଁ ଝଡ଼୍‌ଗ ମୁହୂର୍ତ୍ତେ ॥
କର୍ପୂର ଦଳିତ ପାଞ୍ଚମଠା ମହାର୍ଘ ଭୂଷଣ,
ବର୍ଣ୍ଣଭୂତ ଇନ୍ଦ୍ରଧନୁ ରାଜ୍ୟ ଆଉଧନ ॥
ଅଶ୍ୱହସ୍ତି ପଦାତିରୁ ସୁନସ୍ୟନ୍ଦନକା
କିଏ କହେ ଇତିହାସ ପଟେ ଯବନିକା ॥
କନକ ଦହନେ ଜ୍ୟୋନ୍ତ ବାନବାନନାନ୍ଦ୍ୟୋଲ
ଶୁକଦେବଙ୍କ ନାମ କାହିଁ ଧ୍ୱଂସେ ମହାକାଳ ॥
ହେ ରାଜନ, ହୃଦୟ ହାଲକେଷ ଆନନ୍ଦହୃଦୟ ବିକଶି
ନୀରବ, ଦେବ ଆମନେ ବନେ ନମିହମି ॥
ଚନ୍ଦ୍ରବଂଶୀ ସମ୍ଭୂତ ହେ ନାରାୟଣ ଧୀର
ଶ୍ରୀଚନ୍ଦନ ମହାମନ୍ତ୍ରୀ ଧେନ ମୋ ଜୁହାର ॥

—※—



ଆଗାମି  ଶତାବ୍ଦୀ ଶତାବ୍ଦୀର ଇତହାସ

ପ୍ରତଧ୍ୱନ ଚର୍ଚ୍ଚିକା ଦେବୀଙ୍କର

ପତାକା ଫଡ଼ାକାକୁ ଯୋଡ଼ହସ୍ତରେ

ସ୍ୱାଗତ ଜଣାଇବାରେ ଦୁଇ ଅଭିଯାତ୍ରୀ

ପ୍ରେମଛନ୍ଦା ଓ କବକେଶରୀ ॥



ଲୋକନାୟକ କ୍ଲବ୍ ତରଫରୁ ଆୟୋଜିତ ସଭାମଞ୍ଚରେ ଓଡ଼ିଶାର ମାନ୍ୟବର ରାଜ୍ୟପାଳ, ବି. ସତ୍ୟନାରାୟଣରେଡ୍ଡି, ରାମକୃଷ୍ଣ ମଠର ଅଧ୍ୟକ୍ଷ ସ୍ୱାମୀ ଶିବେଶ୍ୱରାନନ୍ଦ ମହାରାଜଙ୍କ ଆତିଥ୍ୟ ମଞ୍ଚପଛରୁ କବିଙ୍କୁ ସମ୍ବର୍ଦ୍ଧିତ ମାନପତ୍ର ॥

ତା ୨୫-୧-୯୪

# ମାନପତ୍ର

**ହେ** କବିକେଶରୀ ନବକିଶୋର
ବାଙ୍କୀ ଅରଣ୍ୟର କସ୍ତୁରୀ ମୃଗ
ସାହିତ୍ୟ ସାଧକ ଘର ମାଟିର
ଲେଖନୀ ତୁମର ମନ୍ଦର ଗିରି
ଜନତାରେ ଦେଲ ନୀଳମଣି ବାର୍ତ୍ତା
ଘର ଗୋବିନ୍ଦର ଅଲେଖା କଥା,
ମାଆ ଚର୍ଚ୍ଚିକାଙ୍କ ଚରଣ ରେଣୁକୁ ମଥାରେ ତୋଳି ॥

କବିତା ତୁମର ରକ୍ତ ନର୍ତ୍ତର
ପଙ୍ଗୁ ହାତରେ ଦେଇଛ ଖଡ୍ଗ
ଜଡ଼ରେ ଦେଇଛ କଣ୍ଠସ୍ୱର
ବାଙ୍କୀ ମାଆର ମୁକୁଟ ଡୋର
ଭିଡ଼ି ଦେଇଅଛ ଟାଣ କରି
ଜନତାର ହୃଦେ ଉତ୍ସାହ ଉଗ୍ର ଦେଇଛ ଭରି
ବାଧା ବିଘ୍ନର ବିଜୁଳି ଚମକେ ଯାଇନ ଡରି ॥

ସୁପ୍ତ ଓଡ଼ିଆରେ ଜାଗ୍ରତ କରି ରଖିଛ ନାଆଁ
ବାଗ୍‌ଦେବୀ ତବ କଣ୍ଠର ସାହା
ଏ ଟିକି କାଗଜ ଅର୍ଘ୍ୟ ତୋଳୁଛୁଁ
କାଳିଆ ପାଖରେ ରଖିଲ୍ ବାହା ॥

ଆପଣଙ୍କର ଗୁଣମୁଗ୍ଧ ଲୋକନାୟକ କ୍ଲବ୍, ପାଟପୁର, ବାଙ୍କୀ

* *

ଶ୍ରୀଯୁକ୍ତ **ଶରତ ଚନ୍ଦ୍ର ମହାପାତ୍ର**
ସଭାପତି

ଶ୍ରୀଯୁକ୍ତ **ପ୍ରହ୍ଲାଦ ସ୍ୱାଇଁ**, ସମ୍ପାଦକ

ତା ୨୫-୧-୯୪

ମାନ୍ୟବର ରାଜ୍ୟପାଳ
**ଡ଼. ସତ୍ୟନାରାୟଣ ରେଡ୍ଡି**

ପୂଜ୍ୟସ୍ୱାମୀଜୀଶ୍ରୀଲ **ଶିବେଶ୍ୱର ନନ୍ଦ**

ତା ୨୫-୧-୯୪

# ଇଏ ବି ଜଣେ ମହାରଣା

ତାଙ୍କ ନାଆଁ ପଛରେ ଉପାଧିର ଲମ୍ବା ଲଞ୍ଜନାହିଁ ଅଥବା କୌଣସି ଉଚ୍ଚପଦ ପଦବୀରେ ବସି ଅହଂକାରର ଶଣ ମୋଡ଼ିବାର ସୁଯୋଗ ସେ ପାଇନାହାନ୍ତି । ଅତି ସାଧାରଣ ମଣିଷ ଜଣେ—ନିହାତି ଭଦ୍ର, ନମ୍ର ଏବଂ ସଙ୍କୋଚର ସରଳ ∴ ନିମ୍ନ ବେତନ ଶ୍ରେଣୀ ସାମାନ୍ୟ ଜଣେ ସରକାରୀ କର୍ମଚାରୀ । ତଥାପି ତେଲ ଲୁଣର ଜଞ୍ଜାଳ ଭିତରେ ବି ସମଗ୍ର ବାଙ୍କୀ ପାଇଁ ସେ ସମସ୍ତ ଖୋଜିଛନ୍ତି । ତାହା ମଧ୍ୟରେ ସେ ଯାହା କରି ପାଇଛନ୍ତି, ସେ ସବୁ ନିଶ୍ଚିତ ଭାବରେ ଆଶାପ୍ରଦ । ପ୍ରାୟ ଦୁଇବର୍ଷ ତଳେ ବାଙ୍କୀରେ ପହଞ୍ଚି, ଏ ମାଟିର ଚିକିନିଖି ବିବରଣୀ ଜାଣିବାର କୌତୁହଳରେ, ମୁଁ ପ୍ରଥମେ ନବବାବୁଙ୍କର ଠିକଣା ପାଇଥିଲି କୌଣସି ଏକ ସାହିତ୍ୟ ଆସରରେ । ସେଦିନ ଏକ ଗ୍ରନ୍ଥରେ ମୁଦ୍ରିତ ଏକ ପ୍ରବନ୍ଧ ସେଠାରେ ସେ ପାଠ କରିଥିଲେ । ମୋର ମନେହେଲା, ବାଙ୍କୀର ଗୋଟିଏ ଚଳମାନ୍ ଇତିହାସକୁ ସତେ ଯେପରି ମୁଁ ଆଜି ସାକ୍ଷାତ୍ କରିପାରିଛି । ସୌଭାଗ୍ୟ ବଶତଃ ଆଜି ମୋତେ ନବବାବୁଙ୍କର ସେହି ଗବେଷଣା ପ୍ରସୂତ ନିବନ୍ଧ ସଙ୍କଳିତ ଗ୍ରନ୍ଥଟିର କିଞ୍ଚିତ୍ ମୁଖବନ୍ଧ ଲେଖିବାର ସୁଯୋଗ ମିଳିଛି ।

ରାଜା ରାଜୁଡ଼ା ଶାସିତ ଐତିହାସିକ ଉତ୍କଳର ଅନ୍ୟାନ୍ୟ ରାଜ୍ୟ ସହିତ ବାଙ୍କୀକୁ ତୁଳନା କରାଯାଇନପାରେ । ଏ ମାଟିର ଏକ ସ୍ୱତନ୍ତ୍ର ସମ୍ମାନ, ଏକ ସ୍ୱତନ୍ତ୍ର ସ୍ୱାଭିମାନ ରହିଛି — କାରଣ, ଉତ୍କଳ ଇତିହାସର ଜଣେ ମହାନ୍ ବୀରାଙ୍ଗନାଙ୍କର ଲୀଳାକ୍ଷେତ୍ର ଏଇ ଆମର ବାଙ୍କୀ । ମହାଭାରତୀୟ ମାନଚିତ୍ରରେ ଝାନ୍ସି ରାଣୀ ଲକ୍ଷ୍ମୀବାଈଙ୍କ ପରି ଏ ମାଟିରେ ବି ଦିନେ ସଦ୍ୟ ବିଧବା ବାଙ୍କୀ ରାଣୀ ଶୁକଦେଈ ପତିହନ୍ତା ଉପରେ ପ୍ରତିଶୋଧ ନେବାପାଇଁ ନିର୍ଭୟରେ ରଣଭୂମିକୁ ଲମ୍ଫ ଦେଇଥିଲେ । ପରିଶେଷରେ ଶତ୍ରୁ ବି ପରାସ୍ତ ଓ ପଦାନତ ହେଲା । ସେଦିନ ରାଣୀ ଚାହିଁଥିଲେ ହୁଏତ ଖୋର୍ଦ୍ଧା ରଜାଙ୍କର ମୁଣ୍ଡଟା ଗଣ୍ଡିରୁ ଅଲଗା ହୋଇ ଭୂ-ଲୁଣ୍ଠିତ ହୋଇ ପାରିଥା'ନ୍ତା ! କିନ୍ତୁ; ନା—ସେ ତାହା ଚାହିଁଲେ ନାହିଁ । ତାଙ୍କର ମନେ ପଡ଼ିଗଲା ଖୋର୍ଦ୍ଧା ରାଣୀଙ୍କର କଥା । ନାରୀର ସହାନୁଭୂତିରେ, ନାରୀର ଭାବାବେଗରେ ସେ ବୁଡ଼ିଗଲେ । ତାଙ୍କର

ମନେହେଲା, ହୁଏତ କାଲି ସକାଳୁ ଖୋର୍ଦ୍ଧାର ରାଣୀ ବି ତାଙ୍କରି ପରି ବୈଧବ୍ୟର ଯନ୍ତ୍ରଣାରେ ଜରଜର ସନ୍ତୁଳିତ ହେବେ ! ପ୍ରଚଣ୍ଡ ଅନ୍ତର୍ଦ୍ୱନ୍ଦ ଭିତରେ ବି ଅନ୍ୟ ଜଣେ ନାରୀର ଅନାଗତ ଭବିଷ୍ୟତ ତାଙ୍କୁ ବ୍ୟାକୁଳ କରି ଦେଇଥିଲା । ମୁକ୍ତି ପାଇଲେ ଖୋର୍ଦ୍ଧାର ରାଜା । ମୁଗ୍ଧ ବିଜୟିନୀ ଜଣେ ସନ୍ନ୍ୟାସୀ ମହିଳାଙ୍କର ଚରମ ମାନବିକତାର ଏହିଭଳି ଆଦର୍ଶ ସମଗ୍ର ବିଶ୍ୱ-ଇତିହାସରେ ବି ବିରଳ ବୋଧହୁଏ । ନବବାବୁଙ୍କର ପ୍ରଚଣ୍ଡ ଭାବାବେଗ ପ୍ରକାଶ ପାଇଛି ବାଙ୍କୀ ଇତିହାସର ଏହିଭଳି ଏକ କରୁଣ ଅଥଚ ଅନନ୍ୟ ମୁହୂର୍ତ୍ତକୁ ସ୍ମରଣ କଲାବେଳେ (ଦ୍ରଷ୍ଟବ୍ୟ : ପୃଷ୍ଠା– ୧୪) ।

ଜଣେ ଗବେଷକର ମନନେଇ ନବବାବୁ ତାଙ୍କର ଏଇ କ୍ଷୁଦ୍ରଗ୍ରନ୍ଥରେ ବାଙ୍କୀ ସମେତ ରାଣୀ ଶୁକଦେଈଙ୍କୁ ଆମ ପରି ଆଜିର ଅନୁସନ୍ଧିତ୍ସୁମାନଙ୍କ ନିମନ୍ତେ ଏହିଭଳି ଅଧିକତର ସ୍ପଷ୍ଟ ଓ ପ୍ରାଞ୍ଜଳ କରି ଦେଇଛନ୍ତି ।

ବ୍ରହ୍ମାଙ୍କ ଠାରୁ ବିଶ୍ୱକର୍ମା ବା ବିଶୁ ମହାରଣା ପର୍ଯ୍ୟନ୍ତ ପ୍ରାୟ ସମସ୍ତ ମହାରଣା ମାନଙ୍କ ମନରେ ସୃଷ୍ଟି ପ୍ରୟାସର ଯେଉଁ ପୁରାଣ ଇତିହାସ ରହିଛି ଶ୍ରୀଯୁକ୍ତ ନବକିଶୋର ମହାରଣା ସେହି ବଂଶାନୁକ୍ରମରେ ହୁଏତ କିଛି ଗୋଟାଏ କୋଣାର୍କ କରିବାକୁ ଚେଷ୍ଟା କରିଛନ୍ତି । କିଞ୍ଚିତ୍ ତ୍ରୁଟି ବିଚ୍ୟୁତି ସତ୍ତ୍ୱେ ଅନାଗତ ଅତୀତକୁ ତାଙ୍କ ଲେଖନୀର କାରୁକାର୍ଯ୍ୟରେ ସେ କରିଛନ୍ତି ଅଧିକତର ଉଜ୍ଜ୍ୱଳ ଏବଂ ମୂର୍ତ୍ତିମନ୍ତ । ଭବିଷ୍ୟତରେ ସମସ୍ତେ ଦିନେ ଏଇ କଳାକାରଙ୍କର କଥା ନିଶ୍ଚୟ କହିବ । ମୁଁ ତାଙ୍କର ଉଜ୍ଜ୍ୱଳ ଭବିଷ୍ୟତ କାମନା କରୁଛି ।



ପ୍ରାଧ୍ୟାପକ ଡକ୍ଟର **ନିଶାକର ପାଢ଼ୀ**
ବାଙ୍କୀ ମହାବିଦ୍ୟାଳୟ, କଟକ
ତା ୨୭ । ୭ । ୯୫

# ଅଭିମତ

ବାଙ୍କୀର କବି ଶ୍ରୀମାନ୍ **ନବକିଶୋର ମହାରଣାଙ୍କ** ଇତିହାସ ସମ୍ବନ୍ଧୀୟ ରାଣୀ ଶୁକଦେଈଙ୍କ ଜୀବନୀ ଚରିତର ନୂତନ ତଥ୍ୟ ସମ୍ବଳିତ । ତାଙ୍କ ଗବେଷଣାରୁ ବାଙ୍କୀ ଇତିହାସର ଏକ ଗୌରବମୟ ଅଧ୍ୟାୟ ଉଦ୍‌ଘାଟନ ହୋଇଅଛି । ବାଙ୍କୀ ଇତିହାସର ସଗ୍ରହ କଷ୍ଟାପର ଅଧ୍ୟବସାୟି ସାଧନା ସବୁକୁ ପଢ଼ି ଖୁବ୍ ସନ୍ତୁଷ୍ଟ ହୋଇଅଛି ।

ସମଗ୍ର ଓଡ଼ିଶାରେ ଏପରି ଏକ ଅଦ୍ୱିତୀୟ ବିଚକ୍ଷଣ ସାହିତ୍ୟିକ ଓ ଐତିହାସିକ ପ୍ରତିଭାଙ୍କୁ ମୁଁ ଯେ ହାର୍ଦ୍ଦିକ ସ୍ନେହଶ୍ରଦ୍ଧାର ସହିତ ଆଶାକରେ ବାଙ୍କୀ ଇତିହାସରେ, ରାଣୀ ଶୁକଦେଈଙ୍କ ଗୌରବମୟ ଅଧ୍ୟାୟ ସାରାଦେଶ ଜାତିପାଇଁ ଯେପରି ଅମରତ୍ୱର ବିଷୟ ହୋଇଅଛି, ଏହି ଐତିହାସିକ କବି ନବକିଶୋର ତାହାଁ ନମନ୍ତେ ଆମ ଆଗାମୀ ଦାୟାଦମାନଙ୍କ ପାଇଁ, ସେହି ଅମର ଚରିତର ଉଜ୍ଜ୍ୱଳ ଆଲୋକବର୍ତ୍ତିକା ଭାବେ ବିବର୍ଦ୍ଧିକ ହେବେ ଏହା ଜନାର୍ଦ୍ଧେ ମାତ୍ର ସନ୍ଦେହ ନାହିଁ ।

ପରିଶେଷରେ ଏହି ଆଶୀର୍ବାଦ କରେକି ମାଆ ସରସ୍ୱତୀ ତାଙ୍କ ଲେଖନୀ ସୃଜନାରେ ଅମୃତମୟ ଶକ୍ତି ଭରି ଦିଅନ୍ତୁ, କବି ଚିରଯଶସ୍ୱି ଓ ଦୀର୍ଘାୟୁ ଲାଭ କରନ୍ତୁ ଏହାହିଁ ମୋର କାମନା ॥

ଡଃ. କୁଞ୍ଜ ବିହାରୀ ତ୍ରିପାଠୀ
ଅବସର ପ୍ରାପ୍ତ ପ୍ରଫେସର
ପ୍ରଫେସରପଡ଼ା, କଟକ—୩
ତା ୨୧-୧୨-୯୪ ପିନ୍—୭୫୩୦୦୩

# ବାଙ୍କୀ ସାଂସ୍କୃତିକ ସମାଜ

## ଚିନ୍ତା ଓ ଚେତନାର ଷଷ୍ଠ ବାର୍ଷିକୀ ମହାସମାବର୍ତ୍ତନ ସାରସ୍ୱତ

**ଉତ୍ସବ - ୧୯୯୩** ରେ.ନଂ.-୪୮୩୭/୩୯୭

※ ବାଙ୍କୀ—୭୫୪୦୦୮ ※

---

ଶ୍ରୀଯୁକ୍ତ କବିକେଶରୀ ନବକିଶୋର ମହାରଣା, ସା-ବ୍ରହ୍ମପୁର, ଜି-କଟକ

ପିତା-ଶ୍ୟାମସୁନ୍ଦର, ମାତା-ଗୁଞ୍ଜରି ଦେବୀଙ୍କର ସୁଯୋଗ୍ୟ ସନ୍ତାନ ସାହିତ୍ୟ ନନ୍ଦନ ବନୋଦ୍ୟାନ ପାରିଜାତ, ଉତ୍କଳ ଭାରତୀ ପଦ ବିମଣ୍ଡନକାରୀ, ସିଦ୍ଧସାଧକ ପ୍ରତିଭା ବନ୍ଧୁଭୂଷଣ କାବ୍ୟ ପ୍ରାଜ୍ଞିକ ॥

ସମ୍ମାନୀୟ କବିକେଶରୀ ଗୁଣାଶ୍ରୀଧର, ତତ୍ତ୍ୱଭାସ୍ୱର ବିଭୂତିର ସାରସ୍ୱତ ଲେଖନୀ ସୃଜନର ଅତୁଳନୀୟ ବର୍ଣ୍ଣନା ପରିପାଟିର ଓ ଦେଶଦେଶର ଭାଷାକୁ ଶକ୍ତିମନ୍ତ ଭାବେ ରସାଣିବାରେ ଆପଣ ଏକାନ୍ତ ନିର୍ବିନସ୍ତା ଏକ ଜାତିସ୍ମର ପ୍ରତିଭା ଭାବେ ବିଦିତ ॥

ଏହି ପୁଣ୍ୟ ମାଘ ପୂର୍ଣ୍ଣିମାର ସାରସ୍ୱତ ପାର୍ବଣକୁ ମଧୁମୟ କରି, ଯୋଗ୍ୟ ପ୍ରତିଭାର ଶୁଭାର୍ଚ୍ଚନକ ଶୁଭମନାସକଲ୍ପ ମୂଲ୍ୟଶୀଳ ବିଦ୍ୱଜ୍ଜନଙ୍କ ଦରବାରରେ, ଶୁଦ୍ଧବୁଦ୍ଧ କବିକଳାକାର ତଥା ଭାରତର ବାଗ୍ମୀ ନେତୃମଣ୍ଡଳୀଙ୍କ ଉପସ୍ଥିତିରେ ଆପଣଙ୍କୁ କବିକେଶରୀ ସମ୍ବର୍ଦ୍ଧନା ପତ୍ର ଅର୍ପଣ କରି ଆମ୍ଭେମାନେ ନିଜକୁ ଧନ୍ୟ ମନେ କରୁଅଛୁଁ ।

※ ※

**ଗୋକୁଳାନନ୍ଦ ପ୍ରହରାଜ**
ସଭାପତି

**ଯୁଧିଷ୍ଠିର ଦାସ,** ବାଚସ୍ପତି
ମୁଖ୍ୟ ଅତିଥି

**ପ୍ରସନ୍ନ ପାଠଶାଣି,** ପେନ୍‌ସନ୍ ମନ୍ତ୍ରୀ
ସମ୍ମାନିତ ଅତିଥି
ତା ୬ । ୨ । ୯୩

**ବୈରାଗୀ ଚରଣ ପଟ୍ଟନାୟକ**
ସମ୍ପାଦକ
ତା ୬ । ୨ । ୯୩

# ଜୟଯାତ୍ରା

**ଶକ୍ତିମୟୀ** ଚର୍ଚ୍ଚିକା ମାଆର ଯେଉଁ ବରପୁତ୍ର ଚର୍ଚ୍ଚିକା ମହାତ୍ମ୍ୟ ପ୍ରସାଦ ଦେଶକୁ ବିତରି ଦେଇଛନ୍ତି । ତାଙ୍କ ସୃଷ୍ଟିରେ ରାଣୀ ଶୁକଦେଈଙ୍କ ଅଭିଯାନକୁ କିଏବା ସ୍ୱାଗତ ନକରିବ ।

ସ୍ୱୟଂ ଚର୍ଚ୍ଚିକା ଦେବୀ ଯାହାଙ୍କ କଲମକୁ ବଡ଼ ମହିମାମୟ ଉଦ୍ଭାସ ଭାବେ ଗ୍ରହଣ କରନ୍ତି, ତାହା ଓଡ଼ିଆ ଜାତିଭାଷା ପକ୍ଷରେ ଯେପରି ଗୌରବ ବାହାକ, ତାହାଠାରୁ ବଳି ସେ ମେ ସମଗ୍ର ବିଶ୍ୱରେ ବନ୍ଦନୀୟ ହେବେ ଏହା ମୋର ଦୃଢ଼ବିଶ୍ୱାସ ଓ ସଫଳତ୍ୱମର କାରଣ ଏହା ମୁଁ ଆଶାକରେ—

* କବିଙ୍କର ଜୟହେଉ *

**ହେମନ୍ତ କୁମାର ଦାସ**
ଚଳଚ୍ଚିତ୍ର ଅଭିନେତା ଜୟଦେବ ପୁରସ୍କାର ବିଜେତା
ଖମାରଗାଁ, ବାଙ୍କୀ
ତା ୨୪-୩-୯୨

ବାଙ୍କୀମାଟିର ଇତିହାସକୁ ନେଇ କବିତାଙ୍କର ଚିନ୍ତାମଗ୍ନରେ ତିନିଶତ ବର୍ଷର ଅଭିଯାନକୁ ଆଜି ବାସ୍ତବ ବିଜୟୀଭାବେ ରାଣୀ ଶୁକଦେଈଙ୍କୁ ଲୋକ-ମାନଙ୍କ ନିକଟରେ ଉପସ୍ଥାପନା କରିବା, ଜାତିର ଜାତୀୟତାକୁ ଅଭିବାଦନ ଦେଇ ଭାରତୀୟ ନାରୀର ଆଦର୍ଶ ଗୌରବମୟ ଚରିତରେ ଏହି ପୁସ୍ତକଟି ସ୍ୱର୍ଣ୍ଣ ଦର୍ପଣ ସାଦୃଶ ସାରାଦେଶରେ ଝଟକିବ, ଏହାହିଁ ମୋର ଅଭିମତ ।

* *

ଅଧ୍ୟାପକ **ମନୋଜ କୁମାର ମହାପାତ୍ର**
କଣ୍ଠାବାଡ଼ି କଲେଜ
ତା ୨୨-୫-୯୫

# ପତ୍ରିକର ଆଶୀର୍ବାଦ

କବି କେଶରୀ ଶ୍ରୀମାନ ନବକିଶୋର ମହାରଣାଙ୍କ ରାଣୀ ଶୁକଦେଇଙ୍କ ଇତିହାସ ଭିତ୍ତି ଲେଖା ଅତୀବ ପ୍ରଶଂସନୀୟ ହୋଇଅଛି । ସେ ଜଣେ ଉଦୀୟମାନ ଲେଖକ । ତାଙ୍କ ରଚନାରେ ଆମ ପୁରୁଣା କଥାର ଜନଜାଗରଣ ଇଙ୍ଗିତ ବଡ଼ ମଧୁମୟ ହୋଇଅଛି । ପତ୍ତ ସମ୍ବଳିତ ସାହିତ୍ୟ ରଚନା ତାଙ୍କ ଭବିଷ୍ୟତକୁ ଆଲୋକିତ କରି ସେ ଯେ ଦେଶର ଜଣେ ଗଣମାନ୍ୟ ଲେଖକ, ତାହା ମାତ୍ର ପତ୍ରିକାଙ୍କର ଆଶୀର୍ବାଦ ॥ ତାଙ୍କ ସୃଷ୍ଟିରେ ପୁଷ୍ପ ବରଷୁ, ବହିଟି ଲୋକ ଆଦୃତ ହେଲେ ମୁଁ ଖୁସି ହେବି, ଲେଖାର ନିଷ୍ପକ୍ଷତର ପ୍ରଶଂସା ପାଠକବର୍ଗଙ୍କୁ ବିମୁଗ୍ଧ କରିଲେ ସେ ଚିରନ୍ତନ ଧନ୍ୟହେବେ ॥



ମଞ୍ଚଭୂଷଣ ଚଳଚ୍ଚିତ୍ର ଅଭିନେତା

**ଶ୍ରୀ ଦୁର୍ଲ୍ଲଭ ଚନ୍ଦ୍ର ସିଂହ**

ତା ୧୮-୧୨-୯୪, ପୁରୀ ।

# କଣା ଅଜାଙ୍କ ପ୍ରଶଂସା

**ଯଦୁମଣି ସାହିତ୍ୟ ସଂସଦ,** ଉଦୟପୁର ନୂଆଗାଁ, ପିନ୍-୭୫୨୦୮୩, ପୁରୀ

**କବି** ନବକିଶୋର ମହାରଣାଙ୍କ ରାଣୀ ଶୁକଦେଈ, ଲିଖିତ ଦଣ୍ଡନାଟର ଧୂଷଣ ଲେଖାକୁ, ଲୋକମୁଗ୍ଧକର ହେବାରେ ତାହାର ପଟାନ୍ତର କ'ଣ ବା ଲେଖିବ । ଜଗନ୍ନାଥେ ତାଙ୍କ ଲେଖନୀରେ ଫୁଲ ବରଷନ୍ତୁ । ଆମ ଅନୁଷ୍ଠାନ ଯେ ଯୋଗ୍ୟବ୍ରକ୍ତଙ୍କର ପୂଜା କରିପାରନ୍ତି । ନବକିଶୋରଙ୍କୁ ସେହି ପୂଜ୍ୟପୂଜାର ମାନ୍ୟତାକୁ ବାଣ୍ଟି, ଏହି ଶ୍ରୀଭଞ୍ଜଭୂମି କେନ୍ଦୁଝର, ନାମଧେୟ, ଐତିହାସିକ ଗ୍ରନ୍ଥ କବିଙ୍କୁ ପୁରସ୍କୃତ କରାଗଲା, ଶ୍ରୀମାନ୍ ନବକିଶୋର କବି ଯଦୁମଣି ଓ କବି ଗଙ୍ଗାଧର ମେହେରଙ୍କ ପରି ଜଣେ ଶ୍ରେଷ୍ଠସ୍ରଷ୍ଟା କାରିଗର ହେବେ ମୁଁ ଏହି ଆଶୀର୍ବାଦ କରୁଅଛି ॥

❋ ❋

**ଶ୍ରୀ ଦାଶରଥି ପଟ୍ଟନାୟକ**
ତା ୬ । ୩ । ୧୯୯୦

---

ଉକ୍ତ ଗ୍ରନ୍ଥଟି କଟକ ଆକାଶବାଣୀ ଦ୍ୱାରା ତା ୧୭-୨-୧୯୯୧ରେ ପ୍ରଚାର କରାଯାଇଥିଲା ।

# ଏକ ବିପ୍ଳବ ମଶାଲର ଦୀପ୍ତିଶିଖା

## କବିକେଶରୀ ଶ୍ରୀମାନ ନବକିଶୋରଙ୍କ ପ୍ରଣୀତ

ବାଙ୍କୀ ରାଣୀ ଶୁକଦେଈଙ୍କ ଉପାଖ୍ୟାନଟି ବାସ୍ତବ ସତ୍ୟ, ମାଦଳା ପାଞ୍ଜି ତଥା କେତେକ ଐତିହାସିକ ବିବରଣୀ ଦ୍ୱାରା ସ୍ୱୀକୃତ ଓ ପ୍ରମାଣିତ କି, ଏବେ ସୁଦ୍ଧା ତାହା ଲୋକମୁଖରେ ଚିରଞ୍ଜୀବନ୍ତ ଓ ସୁଦୂର ପ୍ରସାରିତ । ତତ୍କାଳୀନ ଅତ୍ୟାଚାରୀ କାମୁକ ଗଜପତି ଗୋପିନାଥ ଦେବ ବାଙ୍କୀ ରାଜାଙ୍କୁ ହତ୍ୟା କରିଥିବା ସ୍ଥଳେ, ଧନଞ୍ଜୟ ଶ୍ରୀଚନ୍ଦନ ସିଂହଙ୍କ ରାଣୀ ଶୁକଦେଈ ଗୋପିନାଥ ଦେବଙ୍କୁ ସମ୍ମୁଖ ଯୁଦ୍ଧରେ ପରାସ୍ତ କରି ଦୋଷଯୁକ୍ତ ପତିହନ୍ତାଙ୍କୁ ଇଚ୍ଛା କରିଥିଲେ ହତ୍ୟା କରି ପାରିଥାନ୍ତେ, ପରନ୍ତୁ ସେ କ୍ଷମାବାରି ସିଞ୍ଚନ କରି, ଗଜପତିଙ୍କ ରାଣୀଙ୍କୁ ବିଧବା ଜନିତ ଦଣ୍ଡରୁ ମୁକ୍ତ କରି ଏପରି ଏକ ଦେଶପ୍ରେମି ସହନଶୀଳ ନୈତିକତାର ଦୃଷ୍ଟାନ୍ତ ରଖିଥିଲେ ଯାହାକି ସାରା ଭାରତ କାହିଁକି ସମଗ୍ର ପୃଥିବୀ ଇତିହାସରେ ତାହା ବିରଳ, କବିଙ୍କ ଭାଷାରେ—

ଶୁକଦେଈ ଜନନୀମେ ବିଶ୍ୱଲଳନା କୁଳମେ
ଯେ ଉପମା ନାହିଁ ଭାଷା ଇତିହାସକୁ
ପାନ୍ଥା ବଳିଥିଲେ ଯିଏ—ଏ ନହି ବୈଧବ୍ୟଦାହ—
ଜାତି ମୁକ୍ତି ମଶାଲ ଜଳନ୍ତ ଶିଖାକୁ—

କବିବର ନବକିଶୋରଙ୍କ କାବ୍ୟକୃତିର ବହୁମୁଖୀ ସର୍ଜନା ତାଙ୍କୁ ଜଣେ ଜାତୀୟ କବି ଭାବେ ଓଡ଼ିଆ ସାହିତ୍ୟକୁ ବାଙ୍କୀର ଅବଦାନ, ଅଭିଭାଷଣ ପ୍ରସଙ୍ଗରେ ମୁଁ ନିଜେ ଆକାଶବାଣୀ କେନ୍ଦ୍ରରୁ ପ୍ରଚାର କରିଥିଲି ।

ସେ ଜଣେ ଐତିହ୍ୟ ଭାବୁକ କବି ଭାବେ ସ୍ୱାଗତଯୋଗ୍ୟ, ତାଙ୍କର ଏହି ପୁସ୍ତକଟି ସାରାଦେଶରେ ଏକ ଅଭିନବ ଆଲୋଡ଼ନ ସୃଷ୍ଟି କରିବ ପାଠକେ ପଠନ ଯୋଗେ ପରିଚୟ ମାତ୍ର ॥



ପ୍ରାଧ୍ୟାପକ, **ଡଃ. ମୋହନଲାଲ ସାହୁ**
ବିଭାଗୀୟ ମୁଖ୍ୟ, ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
କରଞ୍ଜିଆ କଲେଜ, ମୟୂରଭଞ୍ଜ । ତା୯-୮-୧୯୯୪

## ନିଖିଳ ଉତ୍କଳ ଖଣ୍ଡାୟତ ମହାସଭା

# ରାଣୀ ଶୁକଦେଈ ନଗର ଦରବାରରେ

## କବିଙ୍କୁ ରାଜପ୍ରଦତ୍ତ, ଉପାଧିସନନ୍ଦ ପତ୍ରିକା

---

ଶ୍ରୀ ରାଣୀ ଶୁକଦେଈ ସ୍ମୃତି ସଂସଦ, ବାଙ୍କୀଗଡ଼—୭୫୪୦୦୮, ବାଙ୍କୀ

※ **ରାଜକବି** ପଦ୍ମନାଭ ଶ୍ରୀଚନ୍ଦନ କାବ୍ୟ ସୁଧାଂଶୁ ମଣ୍ଡପ

---

**ହେ** ଉତ୍କଳର ଉଦୟାଚଳ ଭାସ୍ୱର ଭାଷାଶିଳ୍ପୀ, ଶ୍ରୀଯୁକ୍ତ ନବକିଶୋର ମହାରଣା ତୁମ୍ଭ ଜାତୀୟତା ସାହିତ୍ୟକୃତିର ଅବଦାନ ସ୍ୱରଚିତ, ରାଣୀ ଶୁକଦେଈ ବାଙ୍କୀ ଇତିହାସ-ରକ୍ତବେଗ, ଚର୍ଚ୍ଚିକା ମହାତ୍ମ୍ୟ ଐତିହ୍ୟ ସମ୍ବଳିତ ଗବେଷଣା କାବ୍ୟକ ଲେଖନୀ ଦ୍ୱାରା ସବିଶେଷ ଭାବେ ବାଙ୍କୀ ମାଟିର ଗୌରବ ବାହକ ହୋଇଅଛ ।

"ବାଙ୍କୀ କାବ୍ୟରେ ଆପଣଙ୍କ ସ୍ୱଦେଶପ୍ରୀତି ମାତୃଭାଷାର ମହିମାସମୃଦ୍ଧି କାରଣେ ଏହି ମାଟିର ବରପୁତ୍ର ଭାବେ ଆପଣ ସକଳରେ ସୁପରିଚିତ ଅଟନ୍ତି ତଥା ଓଡ଼ିଆ ଜାତିର ଜଣେ ଗୌରବ ଭାଜନ ପ୍ରତିଭା ରୂପେ ପ୍ରତିଷ୍ଠିତ", ଅଦ୍ୟ ସାହିତ୍ୟ ଦରବାରରେ ନିଖିଳ ଉତ୍କଳ ଖଣ୍ଡାୟତ ମହାସଭାହୁତ ମଣ୍ଡନ କବି ଶ୍ରୀ ଶ୍ରୀ ଶ୍ରୀଚନ୍ଦନ ମହାପାତ୍ରଙ୍କ ରାଜତିଳକର ପୂର୍ବ ପରମ୍ପରାନୁକ୍ରମେ ! ବନ୍ଧଦୁର୍ଗ ବୁଧହଂସ କେଳିସରସାରସ ସାରସ୍ୱତ ସାହିତ୍ୟ ସାଧକ କବି ନବକିଶୋର ମହାରଣାଙ୍କୁ "କବିକେଶରୀ" ଉପାଧିସନନ୍ଦ ଦିଆଗଲା ।



ରାଜାସାହେବ

ବନ୍ଧଦୁର୍ଗ,

**ଶ୍ରୀ ଶ୍ରୀ ନାରାୟଣ ଶ୍ରୀଚନ୍ଦନ ମହାପାତ୍ର**

ତା ୧୦ । ୪ । ୮୭

# ❋ ଗ୍ରନ୍ଥସୂଚୀ ❋





## —ଇତିହାସର ମୁଖଶାଳା—

### ସତରଶ ଶତକ ପ୍ରଥମ ପାଦର ପ୍ରାରମ୍ଭିକ ଇତିହାସର ପ୍ରତିଧ୍ୱନୀ ତାଳେ ତାଳେ ପୂଣ୍ୟଶ୍ଳୋକା ମହାରାଣୀ ଶୁକଦେଈଙ୍କ ଜୀବନୀ ଅଧ୍ୟାୟରୁ………

**ଅ**ଗାଣ୍ଟ ମଣ୍ଡଳ ବୃହଦମ୍ବା ରାଜ୍ୟର ଚନ୍ଦ୍ରହାଲ ଦୁସ୍ଥାରୁ ଶ୍ରୀ ହଣ୍ଡିକେଶ୍ୱର ରାଉତଙ୍କୁ ଓଡ଼ିଶା ମହାରାଜା କଶୋଳ ନରସିଂହ ଦେବଙ୍କ ଠାରୁ ୧୩୦୫ ଖ୍ରୀଷ୍ଟାବ୍ଦରେ, ଶଙ୍ଖାମାର ଗ୍ରାମରେ ଶଙ୍କୁଆ କନ୍ଧଡ଼ାମାନଙ୍କୁ ତଡ଼ି ଗୃହବର୍ଗରୁ ଆଠବର୍ଗ ଯାଏ ରାଜ୍ୟସୀମା ସ୍ଥାପିଲେ । ଭାଇ ମଲ୍ଲିକେଶ୍ୱର ଓଗୋଳପୁରରେ ଭଣ୍ଡାରିକା ଠାକୁରାଣୀଙ୍କ ସହାୟତାରେ, ଖାରେଡ଼ କନ୍ଧଡ଼ା ସରଦାରଙ୍କୁ ଜିଣି ସତର ପୁରୁଷ ଭୋଗାନ୍ତେ, ପଦ୍ମନାଭ ମଙ୍ଗରାଜ ଙ୍କରବର ୧୬୯୩ରେ ବୁଢ଼ାପଙ୍କ ଯୁଦ୍ଧରେ ମାଆ ଭଣ୍ଡାରିକା ଗୌଡ଼ୁଣୀ ବେଶରେ, ଢେଙ୍କା ସୈନ୍ୟଙ୍କୁ, ଡାଡ଼ରେ ଚୂନମାରି ଦେବାରୁ ରାଜା ବିଜୟ ଲାଭ କଲେ । ଯୁଦ୍ଧରେ ପାଲଟସିଂହ ବାନା ଉଡ଼ିଲା, ଢେଙ୍କାନାଳ ରଜାଙ୍କ ଖିଡ଼ିକଦାର ପାଗ ଜରିପଦାଠାରେ ଛଡ଼ାହୋଇ ରହିଲା, ମାଆ ଭଣ୍ଡାରିକେ ଲକ୍ଷେ ବୋଦା ବଳିଖାଇ ଗଡ଼ର ଅଧିଷ୍ଠାତ୍ରୀ ହୋଇ ବସିଛନ୍ତି । ଠେଙ୍କୁଆ ପିଲା ବଳିଆ ସିଂହଙ୍କୁ ପରାଭୂତ କରିବା ପର ସଙ୍କେତ ନେଇ ମଲ୍ଲିକେଶ୍ୱର ରାଜା, ଗଡ଼ ବାନ୍ଧିଥିଲେ । ବଡ଼ମ୍ବାରେ ସେହିକାଳୁ ପାଲଟା ସିଂହା ବାନା ରାଜୁଅଛି ।

ବଡ଼ମ୍ବାର ବହୁ ପ୍ରାଚୀନ କଥା ହଳଦିଆ ପର୍ବତ କନ୍ଦରରୁ ବାଙ୍କମୁଣ୍ଡୀ ଠାକୁରାଣୀ ଖଳମାଟି ଗାଁରେ ଅବସ୍ଥାନର ବହୁପୂର୍ବ । ହଳଦିଆ ପର୍ବତରୁ କନ୍ଧ ସେବେଇତଙ୍କ ପଛରେ ପାଦ ଘାଗୁଡ଼ି ବଜେଇ ବଜେଇ ଆସିଲେ, ହେଲେ ଖଳମାଟିଠାରେ ଶବ୍ଦ ନ ଶୁଭିବାରୁ, ସେବକ ପଛକୁ ଚାହିଁଦେଲେ । ସେହିକାଳୁ ଠାକୁରାଣୀ ସେହିଠାରେ ପୀଠ ଆସ୍ଥାନ ହୋଇ ବାଙ୍କମୁଣ୍ଡୀ ପୂଜା ପାଉଛନ୍ତି ।

୧୩୦୫ ଠାରୁ ୧୬୩୫ ମଧ୍ୟାନ୍ତେ ଗଡ଼ରେ ୧୨ମୂର୍ତ୍ତି ରାଜାଙ୍କର ନାମ **କୃଷ୍ଣଚନ୍ଦ୍ର ବୀରବର ମଙ୍ଗରାଜ ମହାପାତ୍ର ରାଜାମହାପ୍ରତାପି ଭାବରେ ରାଜ୍ୟ ପରିପାଳନା କଲେ ।**

୧୬୮୭ ଭାଦ୍ରବ ମାସ ଭାଗବତ ଜନ୍ମ ଶୁଭତିଥିରେ ତାହାଙ୍କର ଏକ କନ୍ୟା ଲାଭ ହୋଇଥିଲା । ପୁଣ୍ୟାତ୍ମା କୃଷ୍ଣଚନ୍ଦ୍ର ଦେବ ମଙ୍ଗରାଜ ଝିଅଟିର ନାମ ଶୁକଦେଈ, ରଖିଥିଲେ । ଝିଅ ଜନ୍ମର ବିଜୟ ଉତ୍ସବକୁ ରାଜା ପୂର୍ବ ବିଧାରପୁରରୁ ପାଶ୍ଚାତ୍ୟେ ରଣପାଟ ମଣ୍ଡଳ ଦଖଲ କଲେ ଅମାଡ଼ଆଁ ଖଣ୍ଡେଇତଙ୍କୁ ଜୟକରି । ସେହି କାଳକୁ ଦେଶ ମରହଟ୍ଟା ରଜା ସୁବେଦାରଙ୍କୁ ୭୩୩୫ କାହାଣ ପେସ୍‌କସ ଦେଇ ରାଜା ନିରଙ୍କୁଶ ପୃଥ୍ୱୀଭୋଗ କରୁଥିଲେ । ଜେମା ଶୁକଦେଈ ବଡ଼ ବୁଦ୍ଧିମତୀ ବିଦୁଷୀପଣରେ ବଢ଼ିଥିଲେ । ପୁଅ ପଦ୍ମନାଭ ମଧ୍ୟ ବୀରପଣରେ ବଡ଼ ପାରିବାର ଥିଲେ । ପ୍ରଜାଏ ବଡ଼ ସୁଖ ଶାନ୍ତିରେ ଜୀବନ ଯାପନ କରୁଥିଲେ । ୧୭୦୧ ଜ୍ୟୋଷ୍ଠ ମାସାନ୍ତେ ଗଡ଼ରେ ଭୟାନକ ଅଗ୍ନିଉତ୍ପାତ ହୋଇଲାରୁ ବହୁ ଘରଦ୍ୱାର ଜଳିପୋଡ଼ି ପ୍ରଜାପାଟକେ ଦହନବିଧ ନାରଖାର ଭୋଗକଲେ, ବାଙ୍କୀ ସାମନ୍ତ ନିମାଇଁ ଶ୍ରୀଚନ୍ଦନସିଂହ ରାଜା କୃଷ୍ଣଚନ୍ଦ୍ର ମଙ୍ଗରାଜଙ୍କୁ ବହୁବିଧ ସାହାଯ୍ୟ କରି ଦୁଇମିତ୍ର ରାଜ୍ୟର ସୁସମ୍ପର୍କ ବଢ଼ିଗଲା, ବଡ଼ମ୍ବାଗଡ଼ର ଲୋକେ ବାଙ୍କୀ ସାମନ୍ତଙ୍କର ଶତ ପ୍ରଶଂସା ବାଢ଼ିଲେ । ରାଜା ନିମାଇଁ ଶ୍ରୀଚନ୍ଦନଙ୍କର ପୁତ୍ର ଧନଞ୍ଜୟ ଶ୍ରୀଚନ୍ଦନ ସିଂହ ବହୁଗୁଣରେ ମଣ୍ଡିତ ହୋଇ, ଯୁବ ସୁଲଭଲରେ ପିତାଙ୍କ ଅନୁରୂପରେ ଉଦୟ ହେଲେ । ରାଜା ନିମାଇଁ ଶ୍ରୀଚନ୍ଦନ ଜେନାମଣିଙ୍କ ବିବାହ ପାଇଁ ଆୟୋଜିତ ହେଲାରୁ ବନ୍ଧୁ ନିବନ୍ଧରେ ବଡ଼ମ୍ବା ରାଜା ନିଜ କନ୍ୟା ଶୁକଦେଈଙ୍କୁ ବାଙ୍କୀ ବିବାହ ଦେଲେ । ଦୁଇବନ୍ଧୁ ରାଜ୍ୟର ସମ୍ପଦ ନେଇ, ୧୭୦୨ର ବିଭାନର୍ବା କାର୍ଯ୍ୟ ସମ୍ପର୍ଣ୍ଣ ହେବାରୁ ରାଜା ମଙ୍ଗରାଜ ୧୪ମୂର୍ତ୍ତି ଦାସୀ ଖଟଣି ବହୁବିଧ ଉପଢୌକନ ସମ୍ଭାରରେ ମହାନନ୍ଦୀକୁ ଯୌତୁକ ଦେଲେ । ଦୁଇବର୍ଷ ଉତ୍ତାରେ, ଜେମାଙ୍କର ପୁଅଟିଏ ହେଲା । ରାଜା କୃଷ୍ଣଚନ୍ଦ୍ର ଭଟ୍ଟାରିକାଙ୍କ କୃପାରୁ ନାତିଙ୍କୁ ପାଇ ତାଙ୍କ ନାମ ଦୟାନିଧି ଦେଇଥିଲେ । ଜେମାଙ୍କ ପତିପ୍ରତିମା ରୂପଗୁଣ ଯୁବରାଜ ଧନଞ୍ଜୟ ମଧ୍ୟ ସର୍ବ ଗୁଣାଳଙ୍କୃତ ଭାବେ ଦେଶରେ ସୁନାମ ଅର୍ଜିଥିଲେ । ବାଙ୍କୀର ପ୍ରଜା ପୁଞ୍ଜ ମଧ୍ୟ ଖୁବ୍ ସୁଖ ସୁଭିକ୍ଷରେ କାଳାତିପାତ କରୁଥିଲେ । ରାଣୀ ଶୁକଦେଈଙ୍କର ରୂପଗୁଣ ପ୍ରଜା ପରିପାଳନା ଲୋକମୁଖରେ ପ୍ରଚୁର ହେବାରୁ ଓଡ଼ିଶା ମହାରାଜା ପରଶ୍ରୀକାନ୍ତର ଭାବେ, ବାଙ୍କୀ ରାଜ୍ୟର ଅନିଷ୍ଟ

ସାଧିବାକୁ ବସିଥିଲେ । ୧୭୧୭ ମସିହା ଅକ୍ଷୟ ତୃତୀୟା ଚନ୍ଦନ ଉତ୍ସବକୁ ରାଣୀ ଶୁକଦେଈ ପୁରୀ ଜଗନ୍ନାଥ ଦର୍ଶନକୁ ଅଭିଳାଷୀ ହୁଅନ୍ତେ ଦୁଇଖଣ୍ଡି ସବାରିରେ, ଆବଶ୍ୟକ ଯୋଗାଣ ଧରି ଚାରିଜଣ ଦାସୀ, ତଥା ବେଣ୍ଟେବା ପାଇକଙ୍କ ସହ ସେ ଶ୍ରୀକ୍ଷେତ୍ର ଗମନ କଲେ । ରାଣୀଙ୍କ ସୁରକ୍ଷା ନିମିତ୍ତ ରାଜା ଆଠମୂର୍ତ୍ତି ପାଇକ ଡଗରଙ୍କୁ ସଙ୍ଗ ଦେଲେ । କ୍ଷେତ୍ର ପାଞ୍ଚକୋଶି ଦୂରରେ—ଏକ ପ୍ରମାଦ ପଡ଼ିଲା । ଘଟଣାଟି ଓଡ଼ିଶା ମହାରାଜାଙ୍କ ଦ୍ୱାର କେତେକ ଗୁଣ୍ଡିଆ, ରାଣୀଙ୍କ ସବାରି ଉପରେ ଝପେଇ ପଡ଼ିବାକୁ ଉଦ୍ୟତ ହୁଅନ୍ତେ, ବାଙ୍କୀ ପାଇକେ ତହିଁର ପ୍ରତିବିଧାନ ହୋଇ, ନିର୍ମମ ଗୁଣ୍ଡିଆମାନଙ୍କୁ କଠୋର ଶାସ୍ତି ଦେଲେ । ରାଣୀ ଶୁକଦେଈ ବଡ଼ ଅଶାନ୍ତ ମନରେ ଜଗନ୍ନାଥଙ୍କୁ ଦର୍ଶନ କରି ଫେରିବା ବେଳେ ଚନ୍ଦନପୁର ଠାରେ ରାଜା ଗୋପୀନାଥ ଦେବ ଶୁକଦେଈଙ୍କ ଅନିନ୍ଦ୍ୟ ସୁନ୍ଦର ରୂପ ଦେଖି କାମାର୍ତ୍ତ ଶଠ ଛଳନାତ୍ମକ ଜାଲ ପେଳି, ଆପଣା ଉଆସକୁ ଡାକିଲେ ଆତିଥ୍ୟ ଗ୍ରହଣ କରିବାକୁ, ଗଜପତିଙ୍କ ଦରବାର ବିଧାନରୁ ବାଙ୍କୀ ପ୍ରତି ଯେଉଁ ସବୁ ବିଧି ସମ୍ମାନକୁ ପ୍ରତ୍ୟାଖ୍ୟାନ କରି ରାଣୀ ରୁଷ୍ଟମନରେ ବାଙ୍କୀ ଫେରିଲେ । ପ୍ରଥମ କରି ଶୁକଦେଈ ଗଜପତିଙ୍କୁ ଅସମ୍ମାନ କରିବା, ଗୋପିନାଥଙ୍କ ସୁପ୍ତ କାମାର୍ତ୍ତ ବାସନା, ବାଙ୍କୀ ରାଜ୍ୟ ପ୍ରତି ଘୋର ବିଦ୍ୱେଷି ହୋଇ ଉଠିଲା । ଗଜପତିଙ୍କ କାମ ଚରିତାର୍ଥ ବିଫଳ ହେବାରୁ, କେଇଦିନ, ପରେ ରଣପୁର ଗଡ଼ର କୃଷ୍ଣନରେନ୍ଦ୍ରଙ୍କ ଜେମାଙ୍କ ସବାରିକୁ ଅଟକାଇ ବଳ ପୂର୍ବକ ତାଙ୍କ ଜେମାଙ୍କୁ ନେଇଯିବାରେ ଯେଉଁ ବିଷମୟ ପରିସ୍ଥିତି ଉପୁଜିଲା ତହିଁରେ ଗଜପତି ଗୋପିନାଥ ଦେବ ମୃତ୍ୟୁବରଣ କରିଥିଲେ । ବଡ଼ମ୍ବା ସାମନ୍ତ କୃଷ୍ଣଚନ୍ଦ୍ର ମଙ୍ଗରାଜ ରଣପୁର ରାଜା କୃଷ୍ଣନରେନ୍ଦ୍ର ଦୁହେଁ ମିତ୍ର ରାଜାଥିଲେ, ଜ୍ୟେଷ୍ଠ ଜେମାଙ୍କ ଦୁର୍ଗତିରେ ଗୋପିନାଥ ଦେବଙ୍କ ଧ୍ୱଂସ ସ୍ତୂପ ଗଢ଼ାହେଲା । ପଠାଣ ଦିଆନ ମିର୍ଜ୍ଜା ସଇଦନବେଗ୍, ବକ୍‌ସି ବେଣୁ ଭ୍ରମରବର, ରଣପୁର ଯୁବରାଜ ତାଙ୍କୁ ରଥିପୁରଗଡ଼ଠାରେ ହତ୍ୟା କରିଥିଲେ । ହେଲେ ଶୁକଦେଈଙ୍କ ରୂପାଗ୍ନିରେ ଗୋପିନାଥଦେବ ପତଙ୍ଗ ପ୍ରାୟ ଜଳିପୋଡ଼ି ମଲେ, ରାଜା ଧନଞ୍ଜୟ ସଂରକ୍ଷଣରେ ଖୋରଧା ରାଜାଙ୍କୁ ଗାଡ଼ିରତଳକୁ ଆଣୁନଥିଲେ । ଗଜପତି ଆପଣାର ପାପଚିନ୍ତାକୁ ସାର୍ଥକ କରିବାକୁ ଯାଇ ବାଙ୍କୀ ରାଜାଙ୍କ ଡମଗଡ଼ ମହାଲରୁ ତାଳବସ୍ତ ଓ ଦୋଲଣାପୁର ପ୍ରଗଣାକୁ ଅଧିକାର କରିବାରୁ ଅନାହୁତ ସୀମାଲଙ୍ଘନ ପ୍ରତିହିଂସା ନେଇ ଦୁଇ ରାଜ୍ୟର ଘୋରତର ସଂଗ୍ରାମ ହେଲା ।

ଇତିହାସ ପୃଷ୍ଠାରୁ ଲେଖକ ଯେଉଁ ସବୁ ତଥ୍ୟ ପ୍ରତିପାଦନ କରିବାକୁ ପ୍ରୟସିତ ପାଠକ ମଣ୍ଡଳଙ୍କୁ ଅବଗତ କରୁଅଛି । ୧୮୨୨ ଷ୍ଟର୍ଲିଂ ସାହେବଙ୍କ ଓଡ଼ିଶାର ରାଜାମାନଙ୍କ ଇତିହାସରେ ବାଙ୍କୀର ଗାରଡ଼ି ଗୃହଭୂମି ଏବଂ ୧୮୦୦ ଗ୍ଲାଡ୍‌ଉଇନ୍ ସାହେବଙ୍କ, ଆଇନ୍ ଆକବରୀରେ ଗୋପିନାଥ ଦେବଙ୍କ ହତ୍ୟା ରହସ୍ୟ, ୧୮୭୨ରେ ହଣ୍ଟର୍ ସାହେବଙ୍କର ଇତିହାସର ଦ୍ୱିତୀୟ ଭାଗ ୨୯ପୃଷ୍ଠା ॥ ୧୮୪୭ରେ ସ୍ମିଥ୍‌ସାହେବଙ୍କ ଭୂଗୋଳ ରଚନା ବାଙ୍କୀର ସୀମା ୧୮୦୬ ପି. ମାଲେଙ୍କ ଓଡ଼ିଶା ସେଟଲ୍‌ମେଣ୍ଟ, ୧୯୦୫ ସେଟଲ୍‌ମେଣ୍ଟ, ବାଙ୍କୀ ରାଜବଂଶର ସମ୍ୟକ ଐତିହ୍ୟ ସୂଚନାରୁ, ୧୮୭୨ରେ ଉତ୍କଳ ଦୀପିକାରେ, ରାଣୀ ଶୁକଦେଈଙ୍କ ଯୁଦ୍ଧ ବିବରଣ, ଅତୀବ ସତ୍ୟାସତ୍ୟର ଉପସ୍ଥାପନା । ରାଣୀ ଶୁକଦେଈଙ୍କ ଜୀବନ ଚରିତକୁ ବଡ଼ ସୁଦୃଢ଼ କରିଅଛି !

୧୭୦୨ ଠାରୁ ୧୭୧୬ ମଧ୍ୟରେ ଧନଞ୍ଜୟ ଶ୍ରୀଚନ୍ଦନ ମହାପାତ୍ରଙ୍କ ରାଜୁତି ୧୭୧୬ ଠାରୁ ୧୭୨୫ ମଧ୍ୟରେ ଗଜପତି ଗୋପୀନାଥ ଦେବଙ୍କ ରାଜୁତି, କେତେକ ଐତିହାସିକ ମାନେ କହନ୍ତି, ୧୭୧୩ ଖ୍ରୀଷ୍ଟାବ୍ଦରୁ ୧୭୧୬ରେ ଦିବ୍ୟସିଂହ ଦେବଙ୍କ ଭାଇ ହରେକୃଷ୍ଣ ଦେବ ଓଡ଼ିଶାର ରାଜାଥିଲେ । ତାଙ୍କ ପୁତ୍ର ଗୋପିନାଥ ଦେବ ବଡ଼ ଲମ୍ପଟ ଥିଲେ । ପ୍ରାଚୀନ ଉତ୍କଳ, ପ୍ରଣେତା ସ୍ୱର୍ଗତ ଜଗବନ୍ଧୁ ସିଂହ ତାଙ୍କ ଗ୍ରନ୍ଥର ୩୮୩ ପୃଷ୍ଠାରେ ମନ୍ତବ୍ୟ ବାଢ଼ିଛନ୍ତି, ୨୫ ଅଙ୍କରେ ବାଙ୍କୀ ଯୁଦ୍ଧ ଘଟିଥିବାର, ସ୍ୱର୍ଗତ ଚକ୍ରଧର ମହାପାତ୍ରଙ୍କ, 'ଉତ୍କଳ ଇତିହାସର, ଏକ ଅଜ୍ଞାତ — ଅଧ୍ୟାୟ, ପୁସ୍ତକ ୧୬୬ ପୃଷ୍ଠାରେ, ଶୁକଦେଈ ସାମନ୍ତାଣୀଙ୍କ କଥା ବର୍ଣ୍ଣିତ । ଡଃ. ମହତାବଙ୍କ ଓଡ଼ିଶା ଇତିହାସର ପ୍ରଥମ ସଂସ୍କରଣ ୩୮୭ ପୃଷ୍ଠାରେ ରାଣୀ ଶୁକଦେଈଙ୍କ କଥାବସ୍ତୁ ଉଲ୍ଲେଖମୟ ହୋଇଅଛି । ଖୋରଧା ଦର୍ପଣ, ପ୍ରଣେତା ଦିଗମ୍ବର ଶ୍ରୀଚନ୍ଦନ ତାଙ୍କ ଗ୍ରନ୍ଥର ୨୫୩ ପୃଷ୍ଠାରୁ ୨୫୪ରେ ଯୁଦ୍ଧସ୍ଥ କ୍ଷେତ୍ର ଉପରେ, ମାଙ୍କଡ଼ା ପଥର ଦ୍ୱାରା ମୁଣ୍ଡ ଦେଉଳର ନିର୍ମାଣ, ପ୍ରତ୍ୟେକ ଅର୍ଦ୍ଧ ପୁଟ ଅନ୍ତରରେ ଗୋଟିଏ ଗୋଟିଏ ପଥର ଖୋପରେ କଟାମୁଣ୍ଡମାନ ରଖାଯିବାର କଥା ସେ ଲେଖିଥିଲେ । ୧୮୬୮ ଠାରୁ ୧୯୪୫ରେ ଖୋରଧା ଦର୍ପଣ ପ୍ରଣେତାଙ୍କ ଜନ୍ମମୃତ୍ୟୁର ସମୟରୁ ବଡ଼ମ୍ବା ରଗଡ଼ପଡ଼ାସ୍ଥ ବାଲୁଙ୍କି ନାଟ୍ୟରତନ ୧୮୬୮ ଠାରୁ ୧୯୩୮ ମଧ୍ୟରେ ସେ ଯେଉଁପୋଥି ବିବରଣୀ ବାଢ଼ିଥିଲେ ୧୭୯୩ରେ ବଡ଼ମ୍ବା ନୃମଣି ପଦ୍ମନାଭ ମଙ୍ଗରାଜ ଭଟ୍ଟାରିକାଙ୍କ ବରରେ ଢେଙ୍କାନାଳ ସୈନ୍ୟଙ୍କୁ ଜୟକରି ମା ଭଟ୍ଟାରିକା ରଣଚଣ୍ଡୀ ବେଶରେ ବିପକ୍ଷ ବାହିନୀଙ୍କୁ ମୋହ କରିଦେଲେ ଅବଶିଷ୍ଟ ଢେଙ୍କା-ସୈନ୍ୟ ହାଣ ମୁହଁରେ ଦିବାରୁ ରାଜା ହରିଗିରି ଶୁକଦେଈ ସାମନ୍ତାଣୀଙ୍କ ପତି

ମୁଣ୍ଡ ଦେଉଳେକ ଗଡ଼ାଇଲେ ତହିଁ ଉଧ୍ୱରୁ ୧୭୨୯ରେ ଅବାଟ ମଣ୍ଡଳ ନରସିଂଗପୁର ନୃସିଂହ ରାଜଗୁରୁ ଫଗୁଣ ମାସ ଆଠଦିନେ ବଡ଼ମ୍ବା ଅଞ୍ଚଳରେ କରି ଯୁଦ୍ଧରେ ନିହତ ହେଲେ । ବାଳୁଙ୍କି ନାଟ୍ୟରତନଙ୍କ ପୋଥିର ସୂଚନାରୁ ପ୍ରତ୍ୟକ୍ଷତର ସନ୍ଧାନ ସନ୍ନିବେଶ ହୁଏକ, ବାଙ୍କୀ ଖୋର୍ଦ୍ଧା ଯୁଦ୍ଧରେ ରାଣୀ ଶୁକଦେଇ ମୁଣ୍ଡଦେଉଳ କୁଶପଲ୍ଲୀ ଯୁଦ୍ଧକ୍ଷେତ୍ରରେ ନିର୍ମାଣ କରାଇଲେ । ଖୋରଧା ଦର୍ପଣ ଗ୍ରନ୍ଥର ୧୯୦ପୃଷ୍ଠାରେ ବାଙ୍କୀ ଯୁଦ୍ଧରେ ଜୟମଙ୍ଗଳଙ୍କର ଦଳବେହେରା ଅଗ୍ରଣୀ, ଧନଞ୍ଜୟଙ୍କୁ ଆତତାୟୀ ସମ୍ବୋଧନ କଲେ । ଗ୍ରନ୍ଥର ୧୯୬ ପୃଷ୍ଠାରୁ ୧୯୭ରେ ଲିଖିତ ମାଣିବନ୍ଧଗଡ଼ର ଗୋପୀନାଥ ସରୋବର ଉତ୍ତରକୁ ଶିବ ମନ୍ଦିରରେ ରଜାରାଣୀ ରହୁଥିଲେ ବସନ୍ତ ରୋଗରେ ଜେମାମଣି ମରିବାରୁ ଶିବରୂପେ ପୂଜା ପାଉଛନ୍ତି । ବାଙ୍କୀ ରାଜା ଧନଞ୍ଜୟ ଶ୍ରୀଚନ୍ଦନ, ଆପଣା ରାଜ୍ୟର ସୀମାନ୍ତ ରକ୍ଷାର୍ଥେ ମୁସଲମାନ ନବାବଙ୍କ ଠାରୁ ବହୁ ସୈନ୍ୟ ଆଣି ମହାରାଜାଙ୍କ ସଙ୍ଗେ ବିଦ୍ରୋହ କଲେ ।

ବାଙ୍କୀ ସୈନ୍ୟ, ନବାବଙ୍କ ସୈନ୍ୟ ମିଶି ଖୋରଧା ସୈନ୍ୟଙ୍କ ସହ ଭୟଙ୍କର ଯୁଦ୍ଧହେଲା । ଓଡ଼ିଶା ନୃପ ଭଗିରଥି କୁମାର ବାଙ୍କୀ ରାଜାଙ୍କ ପକ୍ଷ ସମର୍ଥନ କଲେ । ଅଯୋଗ୍ୟ ଗୋପିନାଥ ଦେବଙ୍କ ପରେ ରାମଚନ୍ଦ୍ର ଦେବ ଓଡ଼ିଶାର ରାଜାହେଲେ । ଓଡ଼ିଶା ରାଜାଙ୍କ ପକ୍ଷରେ ଖଣ୍ଡପଡ଼ାର ଫକୀର ମଙ୍ଗରାଜ, ତଟିରିଆର ଚମ୍ପୁଟିଙ୍କ ସହିତ ମିଳି, ଖୋରଧା ସୈନ୍ୟ ବାଙ୍କୀ ରାଜାଙ୍କ ଶିରଚ୍ଛେଦନ କରିଗଲେ । ଏହା ସମ୍ଭବତଃ ପ୍ରଥମ ଦିନ ଯୁଦ୍ଧର ଘଟଣା ବୋଲି ଅନୁମିତ ହୁଏ । ଦିଗମ୍ବର ଶ୍ରୀଚନ୍ଦନ ଗ୍ରନ୍ଥରେ ଦର୍ଶାଇଅଛନ୍ତି ବାଙ୍କୀର ଝିଅ ଓଡ଼ିଶା ରାଜାଙ୍କର ଏକ ପୁଳାଦବାନ୍ଧ ଦାସୀ ବାଙ୍କୀର ଗୁପ୍ତ ସମ୍ବାଦ ଜଣାମଣାରେ ଏହି ଯୁଦ୍ଧର ସୂତ୍ରପାତ ଘଟିଥିଲା — କବିଚନ୍ଦ୍ର କାଳିଚରଣ ମଧ୍ୟ ତାଙ୍କ ରକ୍ତମନ୍ଦାର ନାଟକରେ ଖୋରଧା ରାଜଜେମାଙ୍କ, ଦାସୀ [illegible] ଭୂମିକା ତଥା ବାଙ୍କୀ ବଧୀର ସାମନ୍ତଙ୍କ ରେନ କୌଶଳକୁ ନାଟକୀୟ ଭାବରେ ଲେଖି ଅଛନ୍ତି । ଶାନ୍ତିଦାସଙ୍କ 'ଇତିହାସର କବରତଳେ' ଅକ୍ଷମାଳା, ପ୍ରବୋଧ ରାମଚନ୍ଦ୍ର ମିଶ୍ର ତଥା ଦେଶର ବହୁମାନ୍ୟଗଣ ଲେଖକ, ଡଃ. ମାନସିଂହ, ପଦ୍ମଶ୍ରୀ ରାଧାମୋହନ ଗଡ଼ନାୟକଙ୍କ ଉକ୍ତିକା, 'ଇତିହାସର ପ୍ରତିଧ୍ୱନି' ଲେଖକ 'ହରିହର ମହାପାତ୍ର ପ୍ରମୁଖ'ଶୁକଦେଈଙ୍କ ଅମର ଚରିତକୁ ଲେଖିଥିବା ସ୍ଥଳେ, ରମେଶ ଭଞ୍ଜଙ୍କ ରାଣୀ ଶୁକଦେଈ, ଡଃ. ଜଗନ୍ନାଥ ମହାନ୍ତିଙ୍କ, ଆଜିର ଦେଶର କମଳନାଗ, ଶ୍ରୀ ଶୁକଦେଈ, ବାଗ୍ମୀ କାର୍ତ୍ତିକ କୁମାର ହରିଙ୍କ ଦୁଇ ଐତିହାସିକ

ବରରମଣୀ, କମଳାବାଗର ସମାଧିତଳେ, ବୈକୁଣ୍ଠନାଥ ପଣ୍ଡାଙ୍କ ଗୀତିନାଟ୍ୟ ରାଣୀ ଶୁକଦେଈ, ସଚିତ୍ର ସୁଖବୋଧ ଇତିହାସ ॥ ୪୧ପୃଷ୍ଠାରୁ ଶୁକଦେଈ ଇତିହାସ କଳିକା, କାଶୀନାଥ ମହାପାତ୍ରଙ୍କ ଲିଖିତ ଅଭିନବ ଇତିହାସ, ୧୯୫୨ ମସିହା, ୩୭ପୃଷ୍ଠା ଶୁକଦେଈଙ୍କ ଅଧ୍ୟାୟ, ୧୯୫୫ କୁମାରୀ ବିଷ୍ଣୁପ୍ରିୟାଦାସଙ୍କ ମନୋହର ଇତିହାସ କଥା, ୧୯୫୮ ଲୋକନାଥ ନନ୍ଦଙ୍କ ସରଳ ଇତିହାସ କଥା ମଧ୍ୟରୁ ୧୯୫୪ରେ ପିଲାଙ୍କ ଇତିହାସ ପୁସ୍ତିକାର ୩୪ପୃଷ୍ଠାରେ, ଶୁକଦେଈଙ୍କ ଇତିହାସ ଅଧ୍ୟାୟର ପ୍ରଥମ ଯୁଦ୍ଧଭୂମି, ହଳଦିଆଗଡ଼ ନିକଟ ତାଡ଼ିକ ପାହାଡ଼ ଘାଟିଠାରେ ଯେଉଁ ଯୁଦ୍ଧ ଘଟିଥିଲା, ମରବା, ମଟବା ପଣରେ ବାଙ୍କୀ ରାଜା ହାଣ ଖାଇଲେ, ଖୋରଧା ରାଜାଙ୍କ ବିଶ୍ୱାସ ଘାତକତା, ଜମ୍ବୁମଙ୍ଗଳଗଡ଼ର ଦଳବେହେରାଙ୍କ ନିଷ୍କ୍ରିୟତାର ଭାବେ ବାଂକ ଶ୍ରୀଚନ୍ଦନଙ୍କୁ ମୁହାଁମୁହିଁ ଯୁଦ୍ଧରେ ନପାରି ଛଦ୍ମତାର ସହ ପଶ୍ଚାଦ୍‌ଭାଗରୁ ଅସ୍ତ୍ରାଘାତ କରି ରାଜମୁକୁଟକୁ ନେଇ ଖୋର୍ଦ୍ଧା ରାଜାଙ୍କୁ ଦେଇ ବହୁବିଧ ପୁରସ୍କାର ପାଇଥିଲେ । ନବଘନ ଜେନାଙ୍କ ୧୯୫୭ ପ୍ରକାଶିତ ସରଳ ଇତିହାସର ୪୩ପୃଷ୍ଠାରେ, ଲିଖିତ — ବାଙ୍କୀ ରାଜା ହଳଦିଆସ୍ଥ ତାଡ଼ିକଘାଟି ଠାରେ ଯୁଦ୍ଧ କରୁ କରୁ ଶତ୍ରୁଙ୍କ ଦ୍ୱାରା ଆହତ ହୋଇ ମୃତ୍ୟୁବରଣ କଲେ । କିନ୍ତୁ ଦ୍ୱିତୀୟବାର ଯୁଦ୍ଧ ପୁଇଁଗଡ଼ ଓ କଳାପଥର ପଟ୍ଟ ତଥା ଦକ୍ଷିଣବାହିନୀ ଭୁଲସିପୁର ପଟ୍ଟ ଘୋର ପ୍ରତିହିଂସା ପ୍ରତିଶୋଧାଭିମୁଖି ହୁଏଇଛି ଏହି ଯୁଦ୍ଧରେ ଗଜପତି ଗୋପୀନାଥ ଦେବଙ୍କର ଅହଙ୍କାର ଚୂର୍ଣ୍ଣୀଭୂତ ହୋଇଥିଲା ।

ଢେଙ୍କାନାଳବାସୀ ଧ୍ରୁବଚରଣ ପଣ୍ଡାଙ୍କ ସତ୍ରରମଣୀରେ ରାଣୀ ଶୁକଦେଈଙ୍କ ଚରିତ୍ରରୁ, ହିନ୍ଦୁ ସାଗର ପତ୍ରିକାରେ ଧନଞ୍ଜୟ ନାୟକ, ରାଣୀ ଶୁକଦେଈଙ୍କ ତଥ୍ୟ ଆମ ଇତିହାସ କଥା ନିରଞ୍ଜନ ମହାପାତ୍ର ଧନଞ୍ଜୟ ନାୟକ ଉତ୍କଳ ପ୍ରସଙ୍ଗ, ୧୯୯୩, ୪୯ଖ, ୭ମ ସଂଖ୍ୟା — ନାରୀପ୍ରତିଭା ମହାରାଣୀ ଶୁକଦେଈ, ରାଷ୍ଟ୍ରଦୀପ ୧୯୯୪ ଅଗଷ୍ଟ ସଂଖ୍ୟା ରାଣୀ ଶୁକଦେଈ । ଏ ଫରଗଟେନ୍ ଚ୍ୟାପ୍ଟର ଅଫ୍ ଓଡ଼ିଶା ହିଷ୍ଟ୍ରି. ପି.କେ. ପଟ୍ଟନାୟକ, ବହୁ ଜନମନଲେଖାରେ ରାଣୀ ଶୁକଦେଈଙ୍କ ଅଧ୍ୟାୟକୁ ନାରୀଦର୍ପଣ, ମୃତ୍ୟୁଞ୍ଜୟ ରଥଙ୍କ ଲେଖନୀ, ସାରଳାଦେବୀଙ୍କ ବୀରରମଣୀ, ପୁସ୍ତକ ସମଗ୍ର ଦେଶ ଜାତିପାଇଁ ଏକ ଗୁରୁତର ନୀତିହୀନ ନିର୍ବାଚନ ବେଳେ ବଡ଼ବାରଣାସ୍ଥ ନଳମଣିକାନ୍ତ ମହାପାତ୍ରଙ୍କ ମୁଣ୍ଡ ଦେଉଳ, ବଡ଼ ମଧ୍ୟରେ ରାଣୀ ଶୁକଦେଈଙ୍କ ଅମର ସ୍ମାରକ ସ୍ତମ୍ଭ ମୁଣ୍ଡଦେଉଳ କଥା ଜନସାଧାରଣଙ୍କ ମନେପଡ଼ା କରାଇ ଲବ୍ଧ ହୋଇଛନ୍ତି । ବସ୍ତୁତ ସତ୍ୟାସତ୍ୟ

ଅନୁସନ୍ଧାନରେ, ଗଜପତି ଗୋପିନାଥ ଦେବ ଯୁଗରେ ମୁଣ୍ଡଦେଉଳ ଗଢ଼ି-ନଥିଲେ । ତାହା ଦସ୍ତାର ମୂର୍ତ୍ତିମନ୍ତ କ୍ଷମାସାଗର ପୁଣ୍ୟଶ୍ଳୋକା ମହାରାଣୀ ଶୁକଦେଈ ମୁଣ୍ଡଦେଉଳ ଗଢ଼ିଥିଲେ, ଗ୍ରନ୍ଥକର୍ତ୍ତା ବାଙ୍କୀର ଠେକନେଇ ବିବେଚନା ଦୃଷ୍ଟିରୁ ଇତିହାସର ଗବେଷଣା ବାଡ଼ିନାହାଁ । ଜଗତରେ ଜଣେ ନାରୀ ଦେବମୂର୍ତ୍ତି ନେଇ, ନିଜ ପତିହନ୍ତାଙ୍କୁ କ୍ଷମାଦେଲେ ରାଜଦରବାରରେ, ଆପେ ବୈଧବ୍ୟ ଯନ୍ତ୍ରଣାରେ ଦଗ୍ଧିତ ହୋଇ ଶତ୍ରୁନାଶର ଶିରସିମନ୍ତ ନ ଲିଭାଇ କରକଙ୍କଣ ଚୂର୍ଣ୍ଣନକରି ନାରୀ ମର୍ଯ୍ୟାଦାକୁ ବିଶ୍ୱରେ ଉପସ୍ଥାପନା କରି ଦେଇଗଲେ । ତାହାହିଁ ଗୌରବର ବିଷୟ ।

ଗଜପତି ଗୋପିନାଥ ଦେବ ତ୍ରିକଳିଙ୍ଗର ଜାଲପାତି ବାଙ୍କୀ ସାମନ୍ତ ରାଜାଙ୍କ ରାଜ୍ୟ ତାଳବସ୍ତ ଦୁର୍ଗ ଅଧିକାର କରିଗଲେ । ଖୋରଧାର ବକ୍ସି ବେଣୁ ଭ୍ରମରବର, ନବଘନ ଉତ୍ତରରାୟ, ଜୟମଙ୍ଗଳ ଗଡ଼ର ଦଳବେହେରା ପ୍ରମୁଖ ସେନାଗଣ ଗଡ଼ତରତୁଆ ପଟୁ ପାଇକ ଗୁଳନା କରି ଯୁଦ୍ଧ ଅଗ୍ରଣୀ ହେବାବେଳେ, ଖୋରଧାରୁ ଗଦାଧର ରାଜଗୁରୁ ଗଜପତିଙ୍କୁ ଏହି ହୀନ ସଂକଳ୍ପରୁ ପ୍ରତ୍ୟାବର୍ତ୍ତନ ପାଇଁ ଯେତେ ଚେଷ୍ଟାକଲେ ମଧ୍ୟ ରାଜା ନ ମାନିବାରୁ ରାଜଗୁରୁ ଅନିଚ୍ଛା ସତ୍ତ୍ୱେ ଯୁଦ୍ଧଭୂମିକୁ ବାହାରିଥିଲେ । ବାଙ୍କୀପଟୁ ରାଜା ଧନୁର୍ଦ୍ଧରସିଂହ, ସେନାପତି ଇନ୍ଦ୍ରଜିତ୍ ଦଳବେହେରା, ଚରମବର ଜଗଜେଠୀ, କୁଞ୍ଜବନ ବିଧାରସାମନ୍ତ, ବକ୍ସି ଗୋବିନ୍ଦ ଶରଣ ପଟ୍ଟନାୟକ, ଭୁବନେଶ୍ୱରୀ ଦକ୍ଷିଣ କବାଟ, ପାଇକ ନେତ୍ରବର୍ତ୍ତୀ ଅର୍ଜୁନ ମଙ୍ଗରାଜ ବ୍ୟବର୍ତ୍ତା, ମହେନ୍ଦ୍ର ମାନସିଂହ, ମେଘନାଦ ରାଓ, ଶିଶୁଆ ଦଳବେହେରା ଓ ଜାକବଜା ବୀରମାନଙ୍କୁ ନେଇ ଡମପଡ଼ାର ଧଳବର, ଶ୍ରୀଧର ନରେନ୍ଦ୍ର ପ୍ରମୁଖ ପ୍ରଥମତଃ ତୁଳସୀପୁର ପଟୁ ରତାପାଟ ଶୁଷ୍କପ୍ରାନ୍ତର ପ୍ରାଙ୍ଗଣରେ ଯୁଦ୍ଧର ଘୋଡ଼ାଟାପୁ ଘନ ଘନ ଟପ୍ ଟପ୍ ଆବାଜ୍ ହେଲା । ଖୋରଧାର ସୈନ୍ୟଗଣ ଯେତେବେଳେ ଦୋଲଣାପୁର ଅଧିକାର କରି ପଦ୍ମେଶ୍ୱର ଆଡ଼କୁ ଧାବିତ ହେଲେ, ମନ୍ତ୍ରୀ ଗୋବିନ୍ଦ ଶରଣ ତହିଁ ସନ୍ନିକଟ ପାଇକ ଗୁଉଣି ନେଇ ଶତ୍ରୁଙ୍କ ପଥ ଅବରୋଧ କଲେ, ଆଜି ମଧ୍ୟ ସେହି ବସତି, ମନ୍ତ୍ରୀଡିଉଁରା ନାମରେ ବିଦିତ । ତରତୁଆଗଡ଼ରୁ ଶୌରି ଖଣ୍ଡାୟତ ବାଙ୍କୀ ରାଜାଙ୍କ ପକ୍ଷ ଅବଲମ୍ବନ କରି ଖୋରଧା ରାଜାଙ୍କ ବିରୁଦ୍ଧା-ଚରଣରେ ଗଲେ ।

ସେହିକାଳ ବୈଶାଖିର ପ୍ରଥମ ଯୁଦ୍ଧର ଅସ୍ତଗାମୀ ସନ୍ଧ୍ୟାରେ ରାଜା ଧନଞ୍ଜୟ ଶ୍ରୀଚନ୍ଦନ ତୁଳସୀପୁର ଗଡ଼ରେ ବୀର ବାହିନୀ ଶିବିର ସ୍ଥାପନା କରି

ପରଦିନ ଯୁଦ୍ଧ ବାଜଣା ପ୍ରତୀକ୍ଷାରେ ରହିଥିଲେ । ପଠାଣ ସୈନ୍ୟ ଓ ବାଙ୍କୀ ସୈନ୍ୟଙ୍କର ଘୋରତର କବଳ ଗ୍ରାସି ସଂଗ୍ରାମରେ ପରଦିନ ପ୍ରଭାତର ଯୁଦ୍ଧ ଭୂମି କୋଳାହଳମୟ, ନିଶାଣବାଜ ଉଠିବାର ପ୍ରାରମ୍ଭିକ ସଙ୍ଗୀତବେଳେ ଉଦିତ ରକ୍ତପିଣ୍ଡୁଳା ସୂର୍ଯ୍ୟର କିରଣକୁ ବିଦୀର୍ଣ୍ଣ କରି ଧନଞ୍ଜୟଙ୍କ ଶିବିରରୁ ଏକ ବିକଳ ଚିତ୍କାର ଶୁଭିଲା — ବିଦ୍ୟୁତ୍ ବେଗରେ କିଏ ଜଣେ ଅଶ୍ୱ ଛୁଟାଇ ଖୋରଧାଗଡ଼ ପଥେ ଅଦୃଶ୍ୟ ହୋଇ ଯାଉଅଛି । ତାହାର ଅଘଟନ ଘଟଣାର ପରିଣତି ସ୍ୱରୂପ କ୍ରୁର ଆତତାୟୀ କମ୍ପିମଙ୍ଗଳ ଗଡ଼ର ଦଳବେହେରା, ବାଙ୍କୀ ରାଜାଙ୍କୁ ହତ୍ୟାକରି, ରାଜାଙ୍କ ଶିର ମୁକୁଟଟିକୁ ନେଇ ଖୋରଧାଭିମୁଖେ ଧାବିତ । ଉପସ୍ଥିତ ଷର ଷମଶଙ୍କୁଳ ବାଙ୍କୀ ଯୋଦ୍ଧାଏ ବାଙ୍କୀ ରାଜାଙ୍କ ନିଦାରୁଣ ମୃତ୍ୟୁ ସମ୍ବାଦରେ ମର୍ମାହତ ହୋଇ ଦୃପ୍ତ ପ୍ରତିହିଂସାର ଗର୍ଜନ ଗର୍ଜିଲେ । ହେଲେ, ରାଜାଙ୍କ ମୃତ୍ୟୁରେ କିଏ ଆଜି ନେତୃତ୍ୱ ନେବ । ସେଦିନ ଖୋରଧାବାସୀ ଜୟକାର ମଣ୍ଡିତ ହୋଇ ଯୁଦ୍ଧରୁ ବାହୁଡ଼ିଗଲେ । କେତେକ ଲେଖକ ଉପସ୍ଥାପିତ କରିଛନ୍ତି — ରାଜାଙ୍କ ନିଦ୍ରିତାବସ୍ଥାରେ, ଖୋରଧାର ଆତତାୟୀ ଧନଞ୍ଜୟଙ୍କୁ ହତ୍ୟାକଲେ । ଏପରି ଏକ ବିପଦ ମୁହୂର୍ତ୍ତରେ ରାଜା କଦାପି ନିଶ୍ଚିନ୍ତ ନିଶଙ୍କରେ ସୁପ୍ତ ଯିବାକୁ କେହି ଗ୍ରହଣ କରିନପାରେ । ରାଜା ମଧ୍ୟ ଜଣେ ଅସାମାନ୍ୟ ଯୋଦ୍ଧା ତାଙ୍କୁ ଜଣେ ଦଳବେହେରା ହତ୍ୟା କରିବା ସମ୍ଭବ ନୁହେଁ, ତଥାପି ରାଜ୍ୟ ଲୋଭ ତଥା ପରମା ସୁନ୍ଦରୀ ଶୁକଦେଈଙ୍କୁ ପାଇବାରେ ଲମ୍ପଟି ଗଜପତିଙ୍କ ଚକ୍ରାନ୍ତ, ମାୟାଯୁଦ୍ଧର ନିଗୂଢ଼ କାଳଦ୍ରଂଷ୍ଟ୍ରାରେ ବାଙ୍କୀରାଜା ମୃତ୍ୟୁବରଣ କଲେ । ଦେଶରେ ହାହାକାର ପଡ଼ିଗଲା, ସୈନ୍ୟସେନା ଛତ୍ରଭଙ୍ଗ ହୋଇଗଲେ ।

ଶୁକଦେଈଙ୍କ ବାଲ୍ୟକାଳର କେତେକ ସ୍ମୃତି ତଥ୍ୟପଠରୁ ଜଣାଯାଏ, ଖାଟେରାନ୍ ଦୁର୍ଗର ମହାକାଳୀ ସେବାୟତୀ ଆଦିବାସୀ କନ୍ଧୁଣୀ ବୁଢ଼ୀ କଠୋର ଶୁକଦେଈଙ୍କୁ ଯୁଦ୍ଧବିଦ୍ୟା ଶିଖାଇଥିଲେ । ବଡ଼ମ୍ବାର ଝଣ୍ଡାମାଳ ଗହିର, ଝଣ୍ଡା ଗୁଳନାର ପରାକ୍ରମ ଲତାପାଟ, ଭଞ୍ଜରିକା ଦେବଙ୍କ ଶୈଳସୋପାନରୁ ବାଙ୍କମୁଣ୍ଡୀ ଠାକୁରାଣୀଙ୍କ ପାଖକୁ ଘୋଡ଼ା ଛୁଟେଇ, ଲକ୍ଷ୍ୟଭେଦ ଶର ସନ୍ଧାନ, ସବୁ ବେଶରେ କନ୍ଧୁଣୀ ବୁଢ଼ୀ ଦାସୀ ମାଆ ଦେଶରେ କଠୋର ଶୁକଦେଈଙ୍କୁ ସ୍ନେହତ୍ରୁ ବଢ଼ଭାବେ ପାଳିଥିଲେ । ସରଳା ନିର୍ଭୀକ ସ୍ଥିତପ୍ରଜ୍ଞାର ରାଜଜେମାର ଯୌବନ ପଦାର୍ପଣ । ଏକଦା ଆଖଡ଼ାଶାଳରେ ଏକ ଗର୍ବାଭିମାନୀ ଖିଆଲ ଖେଳରେ ଖଣ୍ଡା ଚଳାଉ ଚଳାଉ ଦାସୀ ମାଆ କନ୍ଧୁଣୀ ବୁଢ଼ୀର ଦକ୍ଷିଣ ବାହୁଟିକୁ ଅଚଳ କରିଦେଲେ, ବହୁଦିନର ପରିଚରିତ ସ୍ନେହର ପ୍ରତିମା ଶୁକଦେଈଙ୍କ

ଖଣ୍ଡାଘାତ ଯନ୍ତ୍ରଣାରେ, ସେ କାଳସାଙ୍ଗ ହୋଇଥିଲେ । ଅଧିକ ଦିନ ବଞ୍ଚି ରାଜକନ୍ୟାଙ୍କ ସୁଖ ସୌଭାଗକୁ ସେ ଦେଖିପାରି ନଥିଲେ । କେତେକ ଶୁଣା କିମ୍ବଦନ୍ତୀରୁ ଜଣାଯାଏ, ସେହି ଦାସୀ ମାଆ କନ୍ଦୁଣୀ ବୁଢ଼ୀଙ୍କ ଅଲକ୍ଷ ଅନ୍ତର ନିସୃତ ଶାପଦଣ୍ଡ,ଶୁକଦେଈଙ୍କ ଆଗାମୀ ଜୀବନକୁ ଭୋଗ କରିବାକୁ ହୋଇଥିଲା ହେଲେ ଅଦୃଷ୍ଟକୁ କାହାର ବା ସାଧ୍ୟଥାଏ ।

ଗଜପତି ଗୋପିନାଥ ଦେବ ମାଣିବନ୍ଧଗଡ଼ ଖୁଣ୍ଟିଆ ଗ୍ରାଉଣୀରେ ରାଣୀ ଓ ତାଙ୍କ ପୁଅଙ୍କୁ ଧରି ରହୁଥିଲେ । ସେହି ଯୁଦ୍ଧ ସମୟ କାଳନରେ ପରର ଅମଙ୍ଗଳ ଚିନ୍ତା, ନିଜ ଜୀବନର ସର୍ବନାଶ ଦୈବଦଣ୍ଡ ଭୋଗିବାକୁ ହେଲା ରାଜାଙ୍କପୁଅ, ବସନ୍ତ ରୋଗରେ ମୃତ୍ୟୁବରଣ କଲେ, ରାଜା ପୁଅର ଶୋକ ସ୍ମୃତିନେଇ ଏକ ଶିବମନ୍ଦିର ନିର୍ମାଣ କରିଥିଲେ । ହୁଏତ ମାଣିବନ୍ଧଗଡ଼ର ଶିବମନ୍ଦିରକୁ ନିଳମଣି ମହାପାତ୍ର ଗଜପତିଙ୍କ ମନ୍ଦିରତୋଳା କଳ୍ପନା ବାଛିଥିବେ କିନ୍ତୁ ଶୁକଦେଈ ବାଳକ ଦୟାନିଧିଙ୍କୁ ଧରି ଶୋକାକୁଳ ପ୍ରତିହିଂସାପ୍ରିତ ଉଦ୍-ଯାପନ କରିଥିବା କୁଶପଲ୍ଲୀପ୍ରାଙ୍ଗଣରେ ମୁଣ୍ଡଦେଉଳ ଗଢ଼ିବା ସ୍ୱତନ୍ତ୍ର ଐତିହ୍ୟକୁ ଅନୁଧ୍ୟାନ ନଦେଇ, ମୁଣ୍ଡଦେଉଳ, ପୁସ୍ତକ ପ୍ରକାଶ କରିବା ନିଳମଣି ବାବୁଙ୍କ ପକ୍ଷରେ ମହାକାଳ ଐତିହ୍ୟ ନିକଟରେ ହାସ୍ୟାସ୍ପଦ ହେବାହିଁ ସାର ହୁଏ । ଦୈବବିଧାନରେ ଗଜପତି ପୁତ୍ରହରା, ରାଣୀ ଶୁକଦେଈ ସ୍ୱାମୀହରା ॥ ବାଙ୍କୀ ରାଜ୍ୟରେ ଅଦିନ ଚଡ଼କ ପଡ଼ିଗଲା । ରାଜା ଧନଞ୍ଜୟ ଶ୍ରୀଚନ୍ଦନଙ୍କ ମୃତ ଦେହକୁ ସଂସ୍କାର କରିଦେଇ ରାଣୀ ଅର୍ଦ୍ଧ ତିନଦିନକାଳ ପର୍ଯ୍ୟନ୍ତ ମୂର୍ଚ୍ଛିତ ହୋଇପଡ଼ିଲେ । ଦାସୀ ପରିଚାରିଣୀଙ୍କ ସେବା ଶୁଶ୍ରୂଷାରୁ କ୍ରମେ ସେ ଯେତେବେଳେ ସଂଜ୍ଞା ଲାଭକଲେ ଉନ୍ମାଦିନୀ ସମ କହିଉଠିଲେ—

ମାଆ ଚଣ୍ଡିକା ତୁମ୍ଭେ ଥାଉଁ ଥାଉଁ ମୁଁ ହେଲି ଅଭାଗିନୀ ।
କାହିଁ ତୋର କରଡ଼ମ୍ବରୁର ପ୍ରଳୟଙ୍କି ନିନାଦନା ।
କାହିଁ ତୁମ୍ଭ ଖଣ୍ଡାସ୍ତ୍ରଧୃତା ଡାକିନୀ ଯୋଗିନୀ—
ପରିବୃତା ଶକ୍ତିଶାଳିନୀ ସଂହାରିଣୀ ରୂପ ।
ମାଆ ମ୍ଲେଚ୍ଛହନ୍ତ୍ରିଣୀ ଭୈରବୀ ହୁଙ୍କୃତା ଅଷ୍ଟଭୁଜା—
କୃଷ୍ଣବର୍ଣ୍ଣା ମୁଣ୍ଡମାଳା ବିଭୂଷିଣୀ ଦନୁଜ ବିଦଳନୀ ।
କହ ମାଆ ତୋ ସନ୍ତାନର ଆଜି ଏକ ଅଭାଗ୍ୟ ଦୁର୍ଗତି ।
ହେ ଦେବୀ ଭଗବତୀ, କାହିଁ ତୋର ବିଶ୍ୱନାଶୀ କୃପାଣ—
ଆମୁଷ୍ଟିହିର ଝଲକ, ବର୍ବର ଗୋପିନାଥ ଦେବର—

ଅହଂକାର ଆଜ ତୋତେ କ'ଣ ପଦାଘାତ ଦେଉନାହିଁତ
ଯାହାର ନେତ୍ରାନଳ କୋଟୀ ସୂର୍ଯ୍ୟର ତେଜ ସ୍ପର୍ଦ୍ଧଣୀମା
ତାଙ୍କୁ ପୁଣି କଏ ଚକ୍ଷୁ ସ୍ପନ୍ଦ ଅବ୍ଦୂଣୀ କରିଦେଇ
ନକ୍ଷତ୍ର ବାଧରରେ ତା କୋଳରୁ ତା ସନ୍ତାନଙ୍କୁ ଛଡ଼ାଇ ନେଇପାରେ ।

ଆକୁଳ କ୍ରନ୍ଦନରୋଳ, ଦସ୍ୟୁନାଥ ! ଦସ୍ୟୁନାଥ କହି ରାଣୀ ପୁନବାର ମୂର୍ଚ୍ଛିତ ହୋଇଥିଲେ । ଏହି ମର୍ମଭେଦୀ ଦୁଃଖାଶ୍ରୁ ବ୍ୟଥା କାଳିମାକୁ ଭେଦକରି ମନ୍ତ୍ରୀ ପରିଷଦ ପକ୍ଷରୁ ବୃଦ୍ଧବେବର୍ତ୍ତା ଶୋକସନ୍ତପ୍ତା ରାଣୀଙ୍କୁ କହିଲେ—ମାଆ ଅଶ୍ରୁବିସର୍ଜନ କରିବାର ସମୟ ଏତନୁହେଁ, ଶୋକସମ୍ବରଣ କରନ୍ତୁ ଦେଖ ଚର୍ଚ୍ଚିକାଙ୍କର ଅନନ୍ତମାୟା ଭେଦକରି ସେ ତାହାର ସନ୍ତାନ-ମାନଙ୍କୁ କନ୍ଦାଇ କେଉଁ ଆନନ୍ଦପାଏ, ତାହା ଆମ୍ଭମାନଙ୍କ ପକ୍ଷରେ ଅଜ୍ଞାତ, ଅଳ୍ପ ସୈନ୍ୟଙ୍କୁ ନେଇ ଯୁଦ୍ଧ କରିବା ପରାଜୟହିଁ ସାରମାର । ରାଜ୍ୟଟାକୁ ଯଦି କଣ୍ଟିତ ରକ୍ଷା କରିବାକୁ ହେଲେ ସୁତରାଂ ତୁଳସୀପୁର ପଟ୍ଟି କଟ୍ଟୁରାଜ୍ୟଦେଇ ଗଜପତିଙ୍କ ନିକଟରେ ସନ୍ଧିପ୍ରସ୍ତାବ ବାଢ଼ିବା ଏକାନ୍ତ ବାଞ୍ଛନୀୟ ।

ରାଣୀ ଶୁକଦେଇ ବୃଦ୍ଧ ବେବର୍ତ୍ତାଙ୍କ ଆଶ୍ୱାସନକ କୁଳଶ ବର୍ଷିଣୀବାଣୀକୁ ପ୍ରତିହତ କରି ଶାବକହରାବାଘୁଣୀ ଭଳି ଗର୍ଜିଉଠିଲେ । ମହାମନ୍ତ୍ରୀ, ରାଜା ସିନା ମରିଗଲେ । ବାଙ୍କୀ ଅଧିବାସୀ ମରିନାହାନ୍ତି, ବାଙ୍କୀବାସୀଙ୍କ ଦେହରେ ରକ୍ତବିନ୍ଦୁଏ ଥିବା ପର୍ଯ୍ୟନ୍ତ ଯୁଦ୍ଧ ଚାଲିବ । ମୁଁ ଯୁଦ୍ଧରେ ମରିଗଲେ, ତୁମେ ସନ୍ଧି କରିପାର । ଅତ୍ୟାଗ୍ରସ୍ତ ଗଜପତି ଗୋପିନାଥ ଦେବଙ୍କ ନିକଟକୁ ରାଣୀ ଶୁକଦେଇ ସନ୍ଧି ପ୍ରସ୍ତାବ ଲେଖିବ ପତିହନ୍ତାର ପାଖରେ ଶୁକଦେଇ ଆତ୍ମ-ସମର୍ପଣ କରିବ, ମୋ ଭୂତାତ୍ମା ମଧ୍ୟ ପାପାତ୍ମାଙ୍କ କ୍ଷମା ଦେଇନପାରେ । ପ୍ରତିହିଂସା ପାଗଳିନୀ ରାଣୀ କ୍ଷତ କ୍ରନ୍ଦିତା ନାଗୁଣୀର ବକ୍ଷୋଦ୍‌ଗାର କ୍ରୋଧୋନ୍ମତ୍ତ କଣ୍ଠରେ କହିଲେ ବର୍ଜ୍ଜି ! ସସେନା ମଣ୍ଡଳ କ୍ଷୁଣ ଓଲଟା ଖଣ୍ଡାବନା ଆଖିଲୁହ ଅଣ୍ଡା ହେବନାହିଁ, ସେ ଖୋଜେ ତାଜାରକ୍ତ, ନିର୍ଲଜ କାପୁରୁଷ ପରିଆରେ ଧନଞ୍ଜୟ ଶ୍ରୀଚନ୍ଦନ ସିଂହର ଘରଣୀ ଶୃଗାଳ ନିକଟରେ ଆତ୍ମସମର୍ପଣ କରିବ । ମନ୍ତ୍ରୀ ତୁମ୍ଭ ବୀରବର୍ଯ୍ୟର ମତ୍ତଦନ୍ତା ଶକ୍ତି ଆଜି ଶିଥିଳିତ ହୋଇଗଲାକାହିଁକି, ବୃଦ୍ଧକେଶରୀର ଗୁରୁଗର୍ଜନ କ'ଣ ନୈବେତମଣ୍ଡଳ ପ୍ରକମ୍ପନା କରିପାରେନା, ଦେଖୁଛି ଯେଉଁ ବୀରମାନଙ୍କ ବସ୍ତ୍ରାଚ୍ଛିତବକ୍ଷ ବାହୁପରିବୃତ୍ତିରେ ମହାନନ୍ଦର ସ୍ରୋତ ଉଜାଣି ଉଠିଆସେ ସେହି ବୀର ସୁତ ହୀନବର୍ଯ୍ୟ ଗୋପିନାଥଙ୍କୁ ସନ୍ଧିପତ୍ର ବାଢ଼ିବ । ଦେଶଜାତିର ଶିରମାକୁ

ଭୂଲୁଣ୍ଠିତ କରି ଧନଞ୍ଜୟଙ୍କ ଅନ୍ତର ଏହା କଣ ସତ୍ ବ୍ୟବହାର । ଭୁଲିଯାଅ ଦେଶଜାତିରସମ୍ମାନ ଐତିହ୍ୟ ପରମ୍ପରାକୁ ସେହି ଯାର ଭୌମୀ ରାଜବଂଶୀ ବଳଭଦ୍ର ଧଳସିଂହଙ୍କର ଆରାଧ୍ୟାଚର୍ଚ୍ଚିକାମାଆଙ୍କୁ, ଯେଉଁ ଯାର ଜାତିର ମୃଗେନ୍ଦ୍ରଲାଞ୍ଛନ ସିଂହରପତାକା ଯାର ମାଟିର ଗୌରବ, ତାହା କଣ ତୁମେ ବିସ୍ମୃତ ହୋଇଗଲଣି । ଯାରୁ କାପୁରୁଷ ପଣରେ ଦେଶକୁ ପରହାତରେ ଟେକି ଦେବାର ଅଭିପ୍ରାୟ କାହିଁକି, ତୁମ ପ୍ରଭୁ ଯିବା ସଙ୍ଗେ ସଙ୍ଗେ ଦେଶର ସ୍ୱାଧୀନତାକୁ ଧ୍ୱଂସ କରିବା ତୁମର ଲକ୍ଷ୍ୟ । ବୃଦ୍ଧମନ୍ତ୍ରୀ ବେବର୍ତ୍ତାଙ୍କ ଘୃଣ୍ୟତର ବାର୍ତ୍ତାକୁ ରାଣୀ ଶୁକଦେଈ ଗ୍ରହଣ କରିନପାରେ ।

ରାଣୀଙ୍କ ଜାଜ୍ୱଲ୍ୟ ରକ୍ତର ଦୁର୍ମଦ ଆହ୍ୱାନ ଗାଥାରେ, ଦେଶପ୍ରୀତି ମନ୍ତ୍ରରେ ବେବର୍ତ୍ତା ଏକ ନବଜୀବନ ଲାଭ କଲାପରି ସେ ବଜ୍ରଗମ୍ଭୀର ବିସ୍ମୟମାନ କଣ୍ଠରେ, କହିଉଠିଲେ ମାଆ ଅଧମରେ କ୍ଷମାଦିଅ, ମାଆ ଭଗବତୀ ଚର୍ଚ୍ଚିକାଙ୍କର ସେହି ଅମିତ ତେଜଶକ୍ତି ଭଗ୍ନକରି ଶବାରୂଢ଼ା କରାଳମୂର୍ତ୍ତି ହାତଠାର ଇଙ୍ଗିତ ଦେଉଅଛି । କାର୍ଯ୍ୟ ସାଧନ୍ତୁ, ନାହିଁତ ଶତ୍ରୁର ପାତସ୍ତେ, ନିର୍ବୋଧ ଗୋପିନାଥ ଦେବ ଆଉ ଜୟମଙ୍ଗଳ ଦଳବେହେରାଙ୍କ ଔଦ୍ଧତ୍ୟକାଶର ଧୂମକେତୁ ଚର୍ଚ୍ଚିକା ଦେବୀର ଖାମାତେଜ ଶକ୍ତିରେ ମୁହୂର୍ତ୍ତକେ ସବୁ ଭସ୍ମୀଭୂତ ହେବ । ଅନ୍ଧାରବୃତ୍ତ ଗଜପତି ବିଷଦନ୍ତଭୁଜଙ୍ଗଶୁଣ୍ଡାରଣକୁ ବୃଦ୍ଧ ବେବର୍ତ୍ତା କ୍ରୋଧାର୍ଦ୍ଧି ପ୍ରଗଳ୍ଭିତରଉଗ୍ରହୁଙ୍କାରଣରେ ସମଗ୍ର ବରୁଣି ପର୍ବତଟା ହାତମୁଠାରେ ଚୁରୁମାର ହୋଇଯାଉ । ଏ ବକ୍ଷକକ୍ଷରେ ତପ୍ତଅଶ୍ରୁର ପ୍ରବାହ ହଟକେଶ୍ୱରଙ୍କ ତ୍ରିଶୂଳ ପ୍ରକମ୍ପନ ପାପଗ୍ରସ୍ତ ଗଜପତିଙ୍କୁ ସମୂଳେ ନିର୍ମୂଳ କରିବା ।

ରାଣୀ ଶୁକଦେଈ ବଜ୍ରଗମ୍ଭୀର ଅଟ୍ଟହାସ୍ୟ ଦେଇ କହିଲେ, ମନ୍ତ୍ରୀ ଚନ୍ଦ୍ରହନ୍ତା ପ୍ରତି କଠୋର ପ୍ରତିଶୋଧ ବିନା ମୁଁ ଶାନ୍ତ ହେବିନାହିଁ । ଏବାର ଯୁଦ୍ଧର ନେତୃତ୍ୱ ନେବେ ମାଆ ଚର୍ଚ୍ଚିକା, ନିଜେ ରାଣୀ ଶୁକଦେଈ ସେନାପତି ଧନୁର୍ଦ୍ଧର ସିଂହ ବିକ୍ରମରେ ପ୍ରତିଜ୍ଞାବଦ୍ଧ, ହାତମୁଠାରୁ ଖଡ୍ଗ ଚଳଚଞ୍ଚଳ ଗର୍ଜିଉଠିଲା । ସତେ ଯେପରି ପ୍ରବାହମାନ ମହାନଦୀରଶକ୍ତି ଉଜାଣିଉଠିଲା ଜୟମାଆଚର୍ଚ୍ଚିକାସିଂହବାହିନୀ ଶ୍ଳଥ ଅସାଡ଼ ସେନା ନିବାସ ରାଣୀଙ୍କ ଜ୍ୱାଳାମୟୀବାଣୀରେ ଘନଘଟା ଯାର ଗର୍ଜନ ଶୁଭିଲା ।

ଉଡ଼ିଉଠିଲା ବନ୍ଦଦୁର୍ଗର ସିଂହ ପତାକା, ନରଗାଙ୍ଗର ପାଇକ ବାହିନୀ ଘାସିପଡ଼ାର ଜେନା ସର୍ଦ୍ଦାର, ବାଘସିଂହ, ପାହାଡ଼ାସିଂହ ପୁଇଁଙ୍କ ମଧୁଆପଲ୍ଲୀ ଠାରୁ ବହୁ ବୀରଗଣ ଖୋରଧା ରାଜାଙ୍କ ବିଶ୍ୱାସ ଘାତକତାକୁ ଦଳିଦେବାରେ ରେରେକାର କରିଧାବିତ ହେଲେ ରାଣୀଶୁକଦେଈ ରକ୍ତବସନ ପରିହିତା, ଯୁଦ୍ଧବର୍ମ ଧାରଣକରି ବାମହସ୍ତରେ ଧନୁ, ଦକ୍ଷିଣ ହସ୍ତରେ ଶାଣିତ ଖଡ୍ଗ ତାଙ୍କଘନକୃଷ୍ଣ ବାରିଦବିନିନ୍ଦିତ ମୁକ୍ତକୁନ୍ତଳକୁ ପୃଷ୍ଠରେ ବିଞ୍ଛାଡ଼ିଦେଇ ପ୍ରତିଶୋଧାମୟୀ କରାଳିନୀ ବିଭୂକ୍ଷୁଣୀ ବ୍ୟାଘ୍ରି ଗର୍ଜିଲା ପରି ବାଙ୍କୀ ବାହିନୀକୁ ଚାଳିତ କଲେ । କିଶୋର ଦୟାନିଧିଙ୍କର ରକ୍ଷଣ ପାଇଁ ବିଶ୍ୱାସିଜନ କେଇଜଣ ପ୍ରହରୀଙ୍କୁ ଛାଡ଼ିଦେଇ ସେ ଯୁଦ୍ଧଭୂଇଁକୁ ବାହାରି ଗଲେ ।

ରାଣୀ ନିଜର ସେନାବାହିନୀକୁ ଦୁଇଗୋଟି ଦଳଭାବେ ଚାଳନା କରି ସରଣ୍ଡା, ଡମପଡ଼ା, ବାଆଁରି, ଘାସିପଡ଼ାଗଡ଼ର ପାଇକମାନେ ଭୁଜସିପୁର ଠାରୁ ନରଗାଙ୍ଗର ବୀରଗଣ ଦକ୍ଷିଣାଭିମୁଖିହୋଇ, ବାଘମାରି ଚଉଖି ପର୍ଯ୍ୟନ୍ତ ବହୁବିଧ ଜଳାପୋଡ଼ା ହାଣକାଟ ହୋଇ ପୋଡ଼ାଡ଼ିହ, ଗଁପୁର କ୍ଷେତ୍ରର ବେଦନା ବିକୃତ ବିକଟ ଚିତ୍କାର, ବିପକ୍ଷବାହିନୀ ମୁହାଁମୁହିଁ ସମର କ୍ଷେତ୍ର ସିମରପୀଠରୁ ମାଣିବନ୍ଧଗଡ଼ ଆଡ଼କୁ ଧାବିତ ହେଲେ । ଉତ୍ତର ପଶ୍ଚିମ ପଟୁ ଖୋର୍ଦ୍ଧା ଭୁବନବିଦିତ ଗେଡ଼ିଆପଲ୍ଲୀର ପାଇକମାନେ, ଯୁଦ୍ଧରେ ବାଙ୍କୀ-ବାସୀଙ୍କୁ ପରାସ୍ତ କରି ଦେଇଥିଲେ । କିନ୍ତୁ ଶୁକଦେଈଙ୍କ ଭାଇ ଟୀକାଯୁକ୍ତ ପଦ୍ମନାଭ ମଙ୍ଗରାଜଙ୍କ ସେନାଦକ୍ଷ, ନୂଆଗାଁ, ପୁଇଁଟଆର ପାଇକ ବାହିନୀ, ଗେଡ଼ିଆପଲ୍ଲୀ ପାଇକଙ୍କୁ ପରାଭୂତ କରିଦେଲେ ।

ଧ୍ରୁବ ପାଲଟାସିଂହ, କୁଞ୍ଜବନ ବିଧାରସାମନ୍ତ, ସେନାପତି ଧନୁର୍ଦ୍ଧର ସିଂହଙ୍କ ପ୍ରଚଣ୍ଡ ଆକ୍ରମଣରେ, ଖୋର୍ଦ୍ଧା ନବଘନ ଉତ୍ତରରାୟ ଏବଂ ଜୟମଙ୍ଗଳ ଗଡ଼ର ଦଳବେହେରା ସାମନ୍ତ ହରିଚମ୍ପତିରାୟଙ୍କର ନିଧନହେଲା । ରାଣୀ ଶୁକଦେଈ ଅଶ୍ୱାରୁଢ଼ା ପ୍ରଚଣ୍ଡଚଣ୍ଡୀକା ଆଲୁଳିତବିଲୁଳିତକେଶା ରଣଦୁର୍ମଦରକାଳୀଙ୍କୁ ଯୁଦ୍ଧ ପ୍ରାଙ୍ଗଣରେ ଗୋପୀନାଥ ଦେବ ଭେଟି ବେଳାପକ୍ଷରୁ ଘୋର ସଂଗ୍ରାମ ହେଲା । ସାମାନ୍ୟ ଜଣେ ନାରୀ ମହାମହିମ ଉତ୍କଳ ସମ୍ରାଟଙ୍କ ଆଗରେ ତରବାରୀ ଚାଳନା କରିବା ଗୋପିନାଥ ଦେବ ଖୁବ ହାସ୍ୟଭାବେ କହିଉଠିଲେ, ସୁନ୍ଦରୀ ! ସୁକୁମାରୀ କରପଲ୍ଲବରେ ଏ ଖରଶାଣ ଅସ୍ତ୍ର ଆଜି ଶୋଭାପାଏନାଁ । ଫେରିଯାଅ ସାମନ୍ତ ରାଜ୍ୟ ରୂପେ ବାଙ୍କୀ ଭୋଗକର ଅବୋଧ ଦୟାନିଧିଙ୍କି ପାଳି ରାଜାକର । ରାଣୀ ଜ୍ୱାଳାମୟ ବାକ୍ୟରେ ଗୋପିନାଥ

ଦେବଙ୍କୁ କହିଲେ ନଗ୍ନମ୍ନା ଶୃଗାଳଙ୍କୁ ପ୍ରତି ସଢ଼ାଶବ ଭେଟି ଦେବାରେ ଆଜି ବାଙ୍କୀ ରାଣୀର ଆହ୍ୱାନ, ମାଆ ବରୁଣେଇଙ୍କର ତୁମେ ଏକାନ୍ତ ବଳହୀନ୍ୟ ଅଯୋଗ୍ୟ ଗଜପତି ।

ଲେଲିହତ ଘର୍ତ୍ତି ଶିଖାର ଅମ୍ବାଶ୍ରିକ ଲେଲିହାନ ଅଗ୍ନିପ୍ରଣନ୍ତ ମୁକୁଳିତ ପତିହନ୍ତା ଠାରେ ମୁଁ ଗୃହେଁ ନିର୍ମମ ପ୍ରତିଶୋଧ । ପ୍ରାଚୀନ କୁଶପଲ୍ଲୀଗଡ଼ରୁ ଗଜପତିଙ୍କର ବହୁ ପାଇକ ଠୁଳ ହୋଇ ଭୀଷଣ ଯୁଦ୍ଧ ହେଲା । ବାଙ୍କୀ, ସରଣ୍ଡା ଡମପଡ଼ା, ବଡ଼ମ୍ବାଗଡ଼ର ପାଇକ ଶକ୍ତି ଏତିକବେଳେ ଏକତ୍ରିତ ହୋଇ ଖୋରଧାର ଶକ୍ତିକୁ କବଳିତ କଲେ । ଯୁଦ୍ଧରେ ଗଜପତି ଗୋପିନାଥ ଦେବଙ୍କୁ ବନ୍ଦୀ କରାଗଲା । ଏହି ଐତିହ୍ୟ କାଳ ବୈଶାଖର ସଂଗ୍ରାମ ଅଧ୍ୟାୟ ୧୭୧୬ — ଅକ୍ଷିତୃତୀୟା ସିବାର ବାଇଶି ଦିନରେ ଘଟିଥିଲା ।

ସେଦିନ ଅସ୍ତସୂର୍ଯ୍ୟର ବିସ୍ଫାରିତ ଅମ୍ବରଚୂର୍ଣ୍ଣିତ ବାଦଲର ପ୍ରେତାଙ୍କିତ ଭୈରବୀ ବାଜଣା କୁଟପଲ୍ଲୀ ଟାଙ୍ଗୀର ବୁକୁ ଉପରେ, ଅଗଣିତ ମୁଣ୍ଡମାଳ ଗଡ଼ିଉଠିଲା । ବିଜୟିନୀ ରାଣୀ କୁଶପଲ୍ଲୀ ଟାଙ୍ଗୀର ଯୁଦ୍ଧକ୍ଷେତ୍ର ଉପରେ ଏକ ଅଭିନବ ସ୍ମାରକୀ ମନ୍ଦିର ତୋଳିବାକୁ ଗ୍ରାମୁକରଣଙ୍କୁ ହୁକୁମ ଦେଲେ । କେତେକ ବିକ୍ଷିପ୍ତ ମଣିଷ ମୁଣ୍ଡ ସବୁକୁ ଗୋଟାଇ ସଜ୍ଜିତ ପଥର ଖୋପ-ମାନଙ୍କରେ ଥୋଇ ଦିଆଗଲା । ଜର୍ଜ୍ଜରିତ ରକ୍ତମୁଣ୍ଡରେ ମୁଣ୍ଡଦେଉଳଟି ଖୋରଧାର ପ୍ରତି ଜନପଦ ମାନସରେ ଘୋର ଆତଙ୍କଗ୍ରସ୍ତ ଢାଙ୍କିଦେଲା । ରାଣୀ ଶୁକଦେଈଙ୍କ ଝିରନ୍ତ ବ୍ୟଞ୍ଜନାର ଉନ୍ମୁକ୍ତ ଅସିପତ୍ରକୁ ଊର୍ଦ୍ଧ୍ୱ ସ୍ୱାଗତ ତୋଳି କହିଲେ ବକ୍ସି ବିଦ୍ୟାଧର ସାମନ୍ତ, ସେନାପତି ଧନୁର୍ଦ୍ଧର ଦେଖୁଛତ ତୁମ୍ଭେମାନେ ଦେବଲୋକରେ ଧନଞ୍ଜୟଙ୍କ ଆତ୍ମା ସ୍ୱର୍ଗଲାଭ କରିଅଛି । ଆଗତ ଅସ୍ତସୂର୍ଯ୍ୟର ତର୍ପଣ ଗଜପତି ଗୋପିନାଥ ଦେବଙ୍କ ମୁଣ୍ଡ, ମୁଣ୍ଡଦେଉଳ ଶୀର୍ଷରେ ସ୍ଥାପିତ କରାଯିବ । ଏବେ ଗୋପିନାଥ ଦେବ ବୁଝିନ୍ତୁ ଏ ମାଟିର ନାରୀ ମଧ୍ୟ ତରବାରି ଗୃଜନ କରିଜାଣେ ।

ବିଶ୍ୱବିଧ୍ୱଂସୀର ଚଣ୍ଡିକାଦେବୀର ଶବଳ ଲହରୀ ଇଙ୍ଗିତ ବିଜୟଦୁର୍ଗର ଗାରିମାକୁ ମହିମାପୂର୍ଣ୍ଣ କରିଅଛି, ରକ୍ତ ବିଧୌତ ମୁଣ୍ଡଦେଉଳରେ ରାଣୀ ଶୁକଦେଈ ପ୍ରତିହିଂସା ବ୍ରତ ଆଜି ଉଦ୍‌ଯାପନ ହୋଇଗଲା ।

ବନ୍ଦୀ ବର୍ତ୍ତମାନ ଦରବାରର ବିଗୃହ୍ୟାର୍ଥେ ମୁଣ୍ଡଦେଉଳକୁ ହସ୍ତକରି ରାଣୀ ତାଙ୍କ ଘୋଡ଼ା ଫେରାଇ ବାଙ୍କୀଗଡ଼ ଉଆସରେ ପହଞ୍ଚିଲେ, ରାଣୀ ଶୂନ୍ୟ ହୃଦୟର ସାଥୀହରା କପୋତ ଭଳି ଧରାଶାୟୀ ହୋଇ ପରଦିନ ପ୍ରଭାତରେ

ବାଙ୍କୀ ରାଜଦରବାର ବନ୍ଦୀ ଗଜପତି ଗୋପୀନାଥ ଦେବ ଏବଂ ଖୋରଧାର ଗଦାଧର, ରାଜଗୁରୁ ରୁପ୍ସାଡ଼ଙ୍କୀ ବିଷର୍ଣ୍ଣ ବଦନ, ଓଡ଼ିଶାର ସ୍ଥାନୀୟ ଗଡ଼ଜାତ ମାନଙ୍କରୁ ବହୁ ଜନପୂର୍ଣ୍ଣ ଉତ୍କଣ୍ଠିତ ଭାବେ ଚାହିଁଥିଲେ, ରାଣୀଙ୍କ ବିଚାର ଦଣ୍ଡର ବିଧାନକର୍ତ୍ତା ରଣକ୍ଷେତ୍ରର ରକ୍ତବସନ ପରିହିତା ଦୁର୍ଦ୍ଧର୍ଷ ଶୀମା ଚଣ୍ଡୀକା ରାଜ ପ୍ରତିନିଧି, ବାଣୀବର ଦଣ୍ଡିତା ଶୁକ୍ଳବସ୍ତ୍ରାବୃତ୍ତ, ଅସିପତ୍ର ଧାରଣ ପୂର୍ବକ ଶାନ୍ତ-କରୁଣା ମୂର୍ତ୍ତିରେ ସିଂହାସନରେ ଉପବିଷ୍ଟ ହୋଇ ସେନାପତି ଧନୁର୍ଦ୍ଧର, କୁଞ୍ଜବନ ବିଧାର ସାମନ୍ତ ବକ୍ସି ଗୋବର୍ଦ୍ଧନଶରଣ, ଧୁମ୍ରକରଣାଦିଙ୍କ ମୁହଁକୁ ଚାହିଁ କହିଲେ ପ୍ରିୟ ପୁତ୍ରୋପମ ଦେଶଭକ୍ତ ବୀରଗଣ, ଶୃଙ୍ଖଳିତ ଗଜପତିଙ୍କୁ ଆଜି ବାଙ୍କୀ ମାଟିର ଅଭିବାଦନ ବାଢ଼ିବାକୁ ଆମର ପ୍ରଥମ କର୍ତ୍ତବ୍ୟ । ଉତ୍କଳାଧିଶ୍ୱରଙ୍କୁ ଆଜି ପ୍ରଜା ପ୍ରତିନିଧି ଭାବେ ବନ୍ଦୀ ଶୁକଦେଈ ଶୃଙ୍ଖଳମୁକ୍ତ କରିବାକୁ ଚାହେଁ । ବକ୍ସି ! ସସମ୍ମାନେ ଗଜପତିଙ୍କ ତରବାରି ପ୍ରଦାନ କରାଯାଉ, ମହାରାଜା ଆପଣ ସାରା ଭାରତ ବର୍ଷ ରାଜନ୍ୟ ମଣ୍ଡଳରୁ ଜଗନ୍ନାଥ ଦେବଙ୍କ ଚଳନ୍ତି ପ୍ରତିମାରୂପୀ ବନ୍ଦନୀୟ । ରଣପଣରେ ଅପ୍ରୋତ୍ସାହନ ନକରି ଆତତାୟୀ ସମନ୍ତୋସ୍ୱାମୀଙ୍କୁ ହତ୍ୟାକରି ଆପଣ କି ଯଶ ଅର୍ଜ୍ଜନକଲେ । ରାଣୀଙ୍କ ଇଙ୍ଗିତ ମାତ୍ରେ ବୀର ଇନ୍ଦ୍ରଜିତ ଦଳବେହେରା — ଗଜପତିଙ୍କୁ ମୁକ୍ତକରି ତରବାରିଟିକୁ ସସମ୍ମାନେ ଅର୍ପଣ କରି ପଛଘୁଞ୍ଚା ଦେଲେ ।

ଗୋପିନାଥ ଦେବ ଘୋର ଲଜ୍ଜିତ ଓ ପୌରୁଷହରା ହୋଇ କହିଲେ ରାଣୀ, ମୋ ମୃତ୍ୟୁଦଣ୍ଡହିଁ, ପାପକୃତର ପ୍ରାୟଶ୍ଚିତ ବିଧାନ ! ରାଣୀ ବାଷ୍ପାକୁଳ କଣ୍ଠରେ କହିଲେ ମହାରାଜା ଦୋଷିର ଦଣ୍ଡ ଚରମ,ମୃତ ଆଉ ମୁକ୍ତ ଗୋଟିଏ ବିଚାର, ମୋ ସୁଖ ସୌଭାଗ୍ୟର ଶିରଶିମନ୍ତ ସିନ୍ଦୂରକୁ ଲିଭାଇ—ମୋ ପ୍ରଜା-କୁଳର ଅଗଣନ ମୂର୍ଦ୍ଧ ବନ୍ଧୁମାନଙ୍କ ଜୀବନକୁ ନିଶ୍ଚିହ୍ନ କରି ଜଗତରେ ଆପଣ କେଉଁ ଆଦର୍ଶ ଥୋଇଗଲେ କହନ୍ତୁ । ଆପଣ ଦୋଷି, କିନ୍ତୁ ଉତ୍କଳ ମହାରାଣୀ ଏହି ଦୁଷ୍କୃତି ପାଇଁ ଦାୟୀନୁହଁନ୍ତି । ତାଙ୍କୁ ବିଧବା କରିବାରେ ମୋର ବା କି ମହତ୍ତ୍ୱ ରହିବ । ମୁଁ ଚାହେଁ ନାହିଁ, ଅନ୍ୟ ଏକ ନାରୀର କପାଳ ସିନ୍ଦୂରକୁ ଛଡ଼ି, ନିଜର କି ସୌଭାଗ୍ୟ ଅର୍ଜ୍ଜନ କରିବ । ତୁମ୍ଭ ବନ୍ଦୀସ୍ୱୀକୃତ ଘାଟରେ ବାଙ୍କୀ ଆଜି ଖୋରଧାର ମହାରାଣୀମାନଙ୍କ ସମ୍ମାନରେ ଜଗତ ଜଣା ବା ଶିକ୍ଷା ଲଭିକଲା ! ଆପଣଙ୍କ ଭଳି ବାଙ୍କୀ ରାଣୀ ମନୁଷ୍ୟତାକୁ ପାଦରେ ଦଳି ଜଣେ ରମଣୀ ଅନ୍ୟ ଜଣେ ରମଣୀ, ପୁତ୍ରହରା ମହାରାଣୀଙ୍କ ସ୍ୱାମୀହରା କରିବାରେ [illegible] କେଉଁ ଯଶ ।

ଉତ୍କଳ ମହାରାଣୀଙ୍କ ପ୍ରତିଦ୍ୱନ୍ଦ୍ୱୀଗଣଙ୍କ ଲିପ୍ସାଗ୍ରାସରେ ମୁଁ କେଉଁ ଶାନ୍ତି ପାଇବି । ଏକମାତ୍ର ସନ୍ତାନ ଦୟାନିଧି ପାଇଁ ବରଞ୍ଚ, ଏଥିରେ ଅକଲ୍ୟାଣ ହେବା ସାର ହେବ । ମୋ, ନିର୍ମିତ ମୁଣ୍ଡଦେଉଳର, ରକ୍ତମାକେତନକୁ କଳଙ୍କିତ କରି ଏହି ଯୁଦ୍ଧ ସର୍ତ୍ତରେ ଗଜପତିଙ୍କୁ ହତ୍ୟାକଲେ କଣ—ମୋ ପ୍ରଭୁ ଧନଞ୍ଜୟ ଶ୍ରୀଚନ୍ଦନଙ୍କୁ ସେହି ଅଦୃଷ୍ଟ ସ୍ୱର୍ଗ ରାଜ୍ୟରୁ ଫେରାଇ ଆଣିପାରିବି କି ।

ଗଜପତି ଗୋପିନାଥ ଦେବ ମର୍ମାହତ ହୋଇ ରାଣୀଙ୍କ ନିକଟରେ ମସ୍ତକ ଅବନତ ହେଲେ ପ୍ରଖର ଅନୁତାପ ଦହନରେ ଆପଣାକୁ ଆପେ ଜଳିଉଠି କହିଲେ ଦେବୀ । ଧନ୍ୟ ଶତଧନ୍ୟ ତୁମ ସ୍ୱର୍ଗ ତୁଳନ କ୍ଷମାର ହୃଦୟ !

ଆପଣାର ପତିହନ୍ତାକୁ ମୁକ୍ତ କରି ଦେଉଛ, ଦେବୀ ତୁମେ ଅସାମାନ୍ୟ ମାନବରୁ ଦେବୀର ଆସନଯୋଗ୍ୟ, ଆଜି ଘୃଣିତ ଗଜପତି ମହାଦେବୀ ମହାରାଣୀ ଶୁକଦେଈଙ୍କ ନିକଟରେ ମୂଲ୍ୟହୀନ, ଉପସ୍ଥିତ ଦରବାରୀ ଆବାଳ ବୃଦ୍ଧବନିତାଙ୍କ କଣ୍ଠରୁ ଉଚ୍ଚସ୍ୱରରେ ଶୁଭିଲା—

ଜୟ ମହାରାଣୀ ଶୁକଦେଈଙ୍କର ଜୟ

ଜୟ ମା' ଚର୍ଚ୍ଚିକାଦେବୀଙ୍କର ଜୟ

ଜୟ ମା' ବ[illegible]ଈଙ୍କର [illegible] ॥

୧୭୧୬ ମୁଣ୍ଡଦେଉଳ, କଥାକୁ ଏବେ [illegible] ଲୋକମାନେ ଭୁଲିନାହାଁନ୍ତି । ସ୍ୱାମୀ ବିଚ୍ଛେଦର ବିଦଗ୍ଧ ଲୋତକମାଳାରେ ପ୍ରଜାବତ୍ସଳା ରାଣୀ ଶୁକଦେଈ ୧୭୨୬ ଖ୍ରୀଷ୍ଟାବ୍ଦର ପୂଣ୍ୟ ମାଘ ପଞ୍ଚମୀ ଦିନ ପଞ୍ଚତ୍ୱ ପ୍ରାପ୍ତହେଲେ ।

ତାଙ୍କ ମରଦେହକୁ କମଳାବାଗର ମହାଶ୍ମଶାନରେ ସତ୍କାର କରାଯାଇ ଏକ ସମାଧି ମନ୍ଦିର ଗଢ଼ାହେଲା । ଯୁବରାଜ ଦୟାନିଧି ବାଙ୍କୀର ରାଜାହେଲେ । ଅଧୁନା ସେହି ବୀରାଙ୍ଗନାଙ୍କ ସମାଧିତଳେ ଖୁରୁପଥକ ତାର ନିସ୍ତେଜିତ ରୁଧିର କଣିକାର ନମ୍ରକମ୍ପନରେ ହୃଦନଳିରକୁ ଖେଳାଇଦିଏ, କଉଳଗ୍ରାମୀମାନେ କୁଣ୍ଡପଲ୍ଲୀ ମୁଣ୍ଡଦେଉଳର ଘୁମୁର, କଥା ଗର୍ଭଶିଣ୍ଡଗଡ଼ କମଳାବାଗର, କର୍ପୁରହରା ପାଟକନାର ସ୍ମୃତି ହରାଏ ଧିନ୍, ଧନ୍ୟ ସେହି ସ୍ୱର୍ଗୀୟା କ୍ଷମାମୟୀ, ତା ଦୟାସାଗରଣୀ ବାଙ୍କୀରାଣୀ ଶୁକଦେଈ ଆଜି କୋଟିଦ୍ୱାରସ୍ଥ ମହାଟେକ, ମହାନଦୀ ଓ ମାଳଜୀ ପାହାଡ଼ଚୂଡ଼ାର ନିଜବୁକର ଚମକ । ବାଙ୍କୀମାନଙ୍କର ଶୁଣିବାକୁ ପାଇକ ଶଙ୍କର ଲକ୍ଷ୍ମୀଦାସ ଯେତେ ଯୁ ହୁଣା ହେଲେ ମଧ୍ୟ ତାହାର ସନ୍ତାନଗଣ ବିଜୟା ଦଶମୀ ଦିନ, ସେମାନଙ୍କ ଅନୁଗମନ ଅନ୍ତରର ବୀରଦର୍ପିତ ଭୂମିକା ସହିତ ଗାଇଉଠେ—

ଜୟ ମହାରାଣୀ ଶୁକଦେଈଙ୍କର ଜୟ ।

ଜୟ ମା' ଚର୍ଚ୍ଚିକାଦେବୀଙ୍କର ଜୟ ॥

# ଶିବ ପାର୍ବତୀଙ୍କ ନାଚ

ଚଣ୍ଡୀ ପଶୁଶଳେ ଚଣ୍ଡଙ୍କୁ ଘାଇ
ଧଗ ଧଦ୍ଧଗିତ ରକତ ବାନ୍ଧ
କ କାରଣ ଏଥି କନ୍ଧ ଗୋସାଇଁ
କାଳଖର୍ପର ମୋ ଉଠେ ଚାଆଁଇ ।
ଦମଦମେ ଆଜ ପୃଥ୍ୱୀ ଥରଇ ।
ଭବଦେବ ଜଟାଧର—
ଝମଝମଝମେ ଝୁଣ୍ଟିଆ — ଝଙ୍କାରେ
ରଢ଼ତ ଖେଳନକର ॥୧॥

ଗଙ୍ଗା ଗଡ଼ଶପ୍ରେ କମ୍ପିତ ହେଲେ
ହାଡ଼ଭଙ୍ଗାମାଳେ ମଥା ଗୁଞ୍ଜିଲେ
ଗଜବଦନଆଁ ଗୋଙ୍ଗ ମୁହଁକୁ
ଷଡ଼ାନନ ସଡ଼ ବନ୍ଦଲେ କାକୁ—
ବାଘକୁ ବଳଦ ସାପ ମୟୂର
ଏକୁ ଝଡ଼ାଝଡ଼ — କବା ଘଡ଼ଘଡ଼ — ଚମକେ କଡଗ୍ରା ମାଳ
କାଳ କୁଣ୍ଡଳୀକା ହଳାହଳ ବାଷ୍ପେ ଜଳେ କଇଳାଶ ପୁର ॥ ୨ ॥

ଶ୍ମଶାନ ଭାଷିଲେ କସ ନୋହିଲ
ବାଘକୁ ବଶାଣ ଉଦ୍ଧନ ଖେଳା ॥
ବରୁଣୀ କଟାଳେ ଅଟ୍ଟାଟାକର
ଟକଟକ ହେଲେ ଶୃମଣ୍ଡା ଦଳ — ମଣିଷ ମାଉଁସ ପାଇଁ,
ବାଙ୍କୀ ଖୋରଧାର ସମର ବାଜଣା — ବାଜୁଛନ୍ତି ଲେ ପ୍ରାଣସଖୀ ॥ ୩ ॥

ନାଗ ମଣିନାଗ ଡମ୍ଫ ଫୁତ୍କାର
ବଶ୍ୱ ବଶ୍ୱମ୍ଭର ବାସୁକୀ ହାର ॥
ଦୁର୍ଦ୍ଧର୍ଷ ଗଇଣ ମନ୍ଦାର ଦଳ
କଳକଳା ରବେ ନାଚଗୋ କାଳୀ — କଇଳାସୁ ନନ୍ଦୀଭୃଙ୍ଗି
ଭୂତପ୍ରେତ କୁଳେ ମତୁଆଳ ହୋଇ, ଶବମାଳା ଯାଅ ଟାଙ୍ଗି ॥୪॥

ରାଣୀ ଶୁକଦେଈ ଖଣ୍ଡା ଫଳକେ
ଗଣ୍ଡା ମୁଣ୍ଡମାଳ କୁଶ ପଲ୍ଲାକେ
ରକତ ଅଞ୍ଜୁଳା ଦେଉଳ ତୋଳା
ଧନଞ୍ଜୟ ରଜା ସରଗ ଲୀଳା — ଇତିହାସ ଉନ୍ମୋଚନେ,
ଦେବଲୋକୁ ଦେବ ଦୁନ୍ଦୁଭି ବାଜେ ଗୋ — ଶୁଣ ଶୁଣ ବୟନନେ ॥୫॥
ବଜ୍ର ବଜୁଳଏ ବଯୋଡ଼ ହୋଇ
ଡମ୍ବରୁ ନର୍ଦ୍ଧେଷି ଯୋଗୀନ୍ଦ୍ରେ ଧାଇଁ,
ଉତକେଶ୍ୱରଙ୍କୁ ଅରଚ ଗଲେ
* ଭୁଞ୍ଜବଂଶୀ, ଭୁଞ୍ଜିମା,କୁ ଠାକିଲେ, ଶ୍ରୀଦେବ ହଟକେଶ୍ୱର
ମାନଙ୍କ ଉତ୍ତମାଙ୍କ ମୌଳି ବନ୍ଧେନ, ଏ ଗ୍ରନ୍ଥ ବରଦସାର ॥୬॥
ମୋଦକ ମୁଦାରଂ ବରବାଞ୍ଛିତ୍ର
କବୀନ୍ଦ୍ର ମୃଗେନ୍ଦ୍ର ଲିଖି ପ୍ରଣିତ,
ବଣୀ ମୃତ ଭଣି ନମାଅ ମଦ
ନେ ଚୀବରକୁ ଯୋଗୀ ଆସ୍ପଦ, କଳ୍ପନା ବନ୍ଦନ୍ତୁଣକେ
ବନ୍ଦଦେଶକୀର୍ତ୍ତି — ବଦର୍‌ଧନ ଶୁଭ — ସୁଧା ପ୍ଲାବନ୍ତୁ ଦଣ୍ଡକେ ॥୭॥



---

* ମହାଭବତର ତଥ୍ୟ ଭୁଞ୍ଜବଂଶୀ ରାଜାମାନଙ୍କ ତମ୍ବାପଟାରେ ରହିଅଛି ।
ଏହାରବୈଦିକ ନାମ "ତ୍ରିଷିବାସକ" ବହୁ ସାଧୁସନ୍ଥମାନେ ଏହାର
ପାଦଦେଶରେ ଥିବାର ଜଣାଯାଏ ।

# ବାବାଜି ନାଚ ଗିତୀ

ତ୍ରିଶକେ ବିହାର ଚର୍ଚ୍ଚିକେ ଜୁହାର   ଫହାର ସୁନ୍ଦର ବେଶ
ମହାକଜଳ ଜଳଦମାଲଜ୍ୟୋଲ   ମହାଜ୍ୟୋଲ ମୁକ୍ତକେଶ
ହେ ସଖିଜନେ ! ଦେଖ ଚର୍ଚ୍ଚିକାଙ୍କୁ ମୋର କୋଟି କୋଟି ଦଣ୍ଡବତ
କାଳିକା କାମନା କରୁଛୁ ବନ୍ଦନା   ସଖିହେଉ ମୁଖରତ   ॥୧॥

ଗଣ୍ଡାମୁଣ୍ଡମାଳା ଖଣ୍ଡା ପ୍ରଚଣ୍ଡ ଗଳାକୁ ମନ୍ଦାରମାଳା ମାର୍ତ୍ତଣ୍ଡ
ତେଜେ ବିନାଶିଲୁ ଚଣ୍ଡ ଓ ମୁଣ୍ଡ,
ଶକ୍ତିପୀଠେ ବିଜେ ଶକ୍ତିମୟୀ ମାଆ   ପାହାଡେ ନୁଆଁଏ ମୁଣ୍ଡ
ଈଶ୍ୱର ପାର୍ବଣ ରୁଦ୍ରନାଚଗୀତ ବାଜୁବାଜା ନବଖଣ୍ଡ   ॥୨॥

ପୁରାଣ ପ୍ରଖ୍ୟାତ ରେଣୁକା ନନ୍ଦ   କାମନା ଭକତ ଭୁଣ୍ଡେ ଘେନଇ
ଭୃଗୁ ଚ୍ୟବନଙ୍କୁ ବନ୍ଧ ବିନୋୟି,   ଔର୍ବସୁତ ଋଚିକଙ୍କୁ ଭଜଇ
ସଖିଜନେ, ସର୍ବ ବିବୁଧାନୁ କୃପାକୁ ବାଞ୍ଛ
ଦଣ୍ଡ ପ୍ରଚଣ୍ଡର ବଡ଼ଭଲୀଳାକୁ ସଖିରେ ଯିବ ମୁଁ ଗାଇ ହେ
ଚର୍ଚ୍ଚିକେ ଶାରଳେ ଏ ଅଧମଗଳେ ପଦମାନ ଦିଅ କହ   ॥୩॥

ଯମଦଗ୍ନୀଙ୍କର ଋଚକ ସୁତ   ଆଶ୍ରମେ ଦେବୀଙ୍କ ଉଡ଼ଇ କେତ
ବୀର ପର୍ଶୁଧର ତପସ୍ୟାରତ   ସତ୍ୟ ଦ୍ୱାପର ତ୍ରେତୟା କଳାତ
ବୁଦ୍ଧ ପ୍ରବୁଦ୍ଧ ସାଧନା
କାଶୀବାସୀ ରୁଦ୍ରଲୀଳା ପରସାଦ ବାଞ୍ଛୁ ପ୍ରଭୁ କାମନା
ମହିଷାଭଙ୍ଗିମା ଦୋଳିକା ବସଇ ପରଭା ନାଟରେ ଯିନା
କୈଳାଶ କନ୍ଦରୁ ଶିବଙ୍କ ଡମ୍ବରୁ ଡାକେ ଦ୍ରିମିକଦ୍ରିମ୍ ବାଜଣା   ॥୪॥

ମହିଷାମୋହିନୀ ଅରଖ ଅରକ ଫୁଲ କଳସକୁ   ଦଣ୍ଡ୍ୟୁଣା ଶିବରେଣୁ
ମହାକାଳଘଟ ହେବାକୁ ପ୍ରକଟ   ଲାଗେ ଭୈରବୀ ବେଣୁ
ବୃଷକୁ ଭୁଜଙ୍ଗ, ହାଡ଼ମାନେ ଲିଙ୍ଗ, ରାଜ ସେବା ଅନୁକ୍ଷଣୁ
ବିଭୂତିକୁ ଭୂତ, କାମନା ଦଳିତ   ଶିବ ଜାଗିବେ ଯିନା ପରାଣୁ   ॥୫॥

ଭୃଗୁ କପିଳପ୍ସ୍ୟୁ ଅର୍ଣ୍ଣି ବାୟୁକଳତ   ନେରଭୈରବୀ ସହ ବନ୍ଦେ
ଢୋଲ ଆରତନ ବାଦ୍ୟ ବରତନ ପାଇବୁ କାମନା ପଦେ
ବାଜା ବଜାଉ ମନ ଆନନ୍ଦେ

ଦଣ୍ଡ ଦଣ୍ଡକରେ ଷଟଚକ୍ର ଜାଗେ   ଇତିହାସକୁ ଶୁଣହେ ମୋଦେ
ଜହ୍ନରଗିଳାଙ୍କୁ ଉଦ୍ଧାର କରି,   ବିଘ୍ନରାଜପଦ ହେଲ ସୁମର
ଏଥିକୁ ଉପାୟ କହ
ହରହର ଶିବ ହରନ୍ତୁ ଦୁର୍ଦ୍ଦଶା   କବି କେଶରୀ କରନ୍ତି ଲୟ   ॥୭॥

# ପରଶ୍ରା ନାଚ ଗୀତ

ମୟୂର ନାଚୁଆ ନାଚନ୍ତୁ ଆଜି   [illegible]ାମେଘେ ଶିବ ଡମ୍ବରୁ ଖେଦ
ଘିଡ଼ି ଘିଡ଼ି ଘିଡ଼ି ବାଜୁଛି ଢୋଲ   ତ୍ରିଶୂଳ ପ୍ରକମ୍ପ ତାଣ୍ଡବ ତାଳ
ଫୁ ଫୁ କାର ଅହି ଗଙ୍ଗା ଉଚ୍ଛଳ   ଶିବାନୀ ଶ୍ମଶାନ ନାଚ
ଥଲାଙ୍ଗ ଥଲାଙ୍ଗେ   ଗଣିଆ ହେଇବେ   ଆଜି ପଡ଼ୁଛି   ପରଶ୍ରା ନାଚ ॥
ଚେଦିରାଜକୁଳୁଁ ତାହଲେ ଜାତ   ଏ ବଙ୍ଗ ରାଇଜ ଶାସୁଥିଲେତ
ଗୁମଣ୍ଡା ମଣ୍ଡଳୁ ଭୌମ ରାଜୁତ   ଚଉଦଶ ବାଇଶର ସଙ୍କେତ
ଦଣ୍ଡି ଇତିହାସ ହେଲ ସମ୍ଭୂତ
ଧନ ନୃପବର   ବଳଭଦ୍ର ରାଜା   ଦେବୀଙ୍କ ହେଲେ ଭକତ
ତେର ଭୋକତାଙ୍କ ତେରବେତ ମୁଣ୍ଡେ   ଉଡ଼ୁଛି କାଳିକା ନେତ ॥
ଚୌରଅଶୀ ସିଦ୍ଧି ସାଧନା ପୀଠୁଁ,   ଶୈବ୍ୟତନ୍ତ୍ର ଅଧିଷ୍ଠାତ୍ରୀ କର୍ମଠୁ
ଚର୍ଚ୍ଚିକାପୁରି ପଦ ବନ୍ଧ
ଚୌରଅଶୀ ଯୋଗୀ ଜାଳିଶିବ ଅଗ୍ନି   ଯୋଗକୁଣ୍ଡେ କମ ଥିଲେ ନେଦ
ଦଣ୍ଡ ଦାଣ୍ଡୁଆଏ ଭକତେ ତାରନ୍ତି   ପ୍ରାଣି ଯାତନା ସକଳ ଛେଦ ॥
ଧନ ରାଜକୁଳ ଏଗାର ପୁରୁଷେ   ବେଦେହେର ଖଣ୍ଡାପୂଜି ପଡ଼ୁରୁଷେ
ମହାବଳ ମହାରାଜ ବଂଶେଷ   ମଧୁ ଶ୍ରୀଚନ୍ଦନ ସାର
କ୍ଷତ୍ରୀକୁଳ ଧୂମକେତୁ ନାକର, ଓଡ଼ଶା ରାଜା ସମରେ
ମଧୁ ମଧୁ ହାନ ଗନ୍ଧାପବନ   କାଳଟବ ଅକାଳ ସନ୍ଧରେ
ରମଣୀ ମଣି ରାଣୀ ମୁକ୍ତାଦେଇ   ଦଣ୍ଡପାଟୁଆରେ ଦଣ୍ଡ ପୂଜାଇ
କୂଳମୂଳେ ମୌଳୀ ରାଜା କରାଇ   ପୂଜୁଥିଲେ ଚର୍ଚ୍ଚିକାପୁରୀ
କାଳିକା କାମନା ସଦାଶିବ ବାନା,  ଯାହା ବିଧାନ ରଞ୍ଜିଲେ ଦେହ ॥

॥ ୨୦ ॥

ବନ୍ଧଦୁର୍ଗ ସ୍ୱର୍ଗ ସୁଖ ନଶ୍ରେଣି   ତେରଶ ଶତକ ସତ୍ୟ କାହାଣୀ
ଆଚାର୍ଯ୍ୟ ଯାଗ ଉତ୍ପ୍ରାନ୍ତ ଲୀଳା   ମହାନଦୀ ପାଣି କଂଲ୍ଲ ଜଳା
ଅଛୁ ସେ କମଳାବାଗ
ଶ୍ରୀ ଧୋବେଇ ଗୁରୁ ଅପୂଜା ପୂଜନେ ଗରଜଇ କାଳନାଗ ॥

ସେ କାହ୍ନୁ ବୁଟେଶ୍ୱ ଶେଵଗ ଓ ଝାମୁ ,  ଦଣ୍ଡ କୃଷ୍ଣାଗଡ଼ା ମେରୁ ଶ୍ରୀଗ୍ରୁମୁଁ
ବଜ୍ରଯାନ ଲୀଳା ସହଜ ଯାନ,   ନାନା ସାଧନେ ଦଣ୍ଡର ଉଆଣ
କାମନା ଉକତ ହେତେ
ମଣି ମହାମେରୁ   ମହିମା ଶବଦେ   ସମ୍ବାଦେଉ ମୁଖସ୍ଥ
କବି କୁଳମଣି   ଭାଷାର ବନ୍ଧାଣି   ନବକିଶୋର ବିରଚେ ଗୀତେ ॥



# ଚଢ଼େୟା ଗିତୀ

ବନ୍ଦେ କାମନା ଚରଣ      ବନ୍ଦେ ଶ୍ରୀଗୁରୁ ଶରଣ,
ବାଙ୍କୀ ଖୋର୍ଦ୍ଧା ଯୁଦ୍ଧ  ଇତିହାସ ପଦ ଚଢ଼େୟାରେ   ସମ୍ବାଦେନ କରିବା ଜାଣ
ବାଙ୍କୀ ଖୋର୍ଦ୍ଧା ସୀମା   ଛଳନା ଛଇଲେ   ତାଳବନ୍ତ ତ୍ରିଗଣାକୁ
ଓଡ଼ିଶାର ରଜା ମାଡ଼ ବସିଥିଲେ ବଳକଷି ପାଇକ ପୁଅଙ୍କୁ
ଚଢ଼େୟାରେ   ଝଣ୍ଟାବାଣ ଶବଦେ  ଚମକୁ  ॥
ରଣ ନକ୍ଷତ୍ର ବେକ ମୋଡ଼ ସିମା ପଥର କନ୍ଦଳ ନେଇ
ନଈ ଛଇ ଖେଳିଲ ଲୋଭି ଶୃଗାଳ କ, ଧନୁଗୁଣକୁ କାମୁଡ଼େ ନେଇଁ
କପି ଜାଲା ଉପାଟି ମରଇ
ମହାପର୍ବତରୁ ମାଆ ଚର୍ଚ୍ଚିକାଙ୍କ ପାଟିହେଲା ଠାକୁ ଠାକୁ
ମଣିଷ ରକତ ଭୋଗ ବାଡ଼ି ଦେଲେ     ବର ବର୍ଷିମା ବଢୁଣେଇ ଭୁ !
ଠମକ ନଟାଣ ଶିଙ୍ଗା  ଶବଦରେ   ମହୀମଣ୍ଡଳ କମ୍ପନ ଲକ୍ଷୁ  ॥
ଗଡ଼ ସେ ଜୟ ମଙ୍ଗଳା          ମାଙ୍କଡ଼ଖିଆ ସେ କେଳା
ହାଣ୍ଡିଚମ୍ପି ଦଳବେହେରା ଯେ
ଗାଳେ ସୁଦ୍ଧଶିବରେ ଲୁଚିଲ  ॥

ଶୁଣ ଆହେ ଗୁଣ ଗୁଣୀ   ମହିମା ମଣିଙ୍କ ମଣି
ନ ଜନ୍ମିଲ୍ ସଂଯୋଗେ ଯେ କାଳ ସ୍ୱଦ୍ଧିକୁ ରଜା ହୋଇଲେ ସତତ ଖୁଣି ॥
ଧର୍ମଯୁଦ୍ଧେ ବୀର ଧନଞ୍ଜୟ ରଜା   ସୁପ୍ତରଣିରେ ଥିଲେ ଶୋଇ
ରଗଡ଼ ପଗଡ଼ ଖଣ୍ଡାଝଡ଼ ବର୍ଜି   ଶତ୍ରୁ ନେଇଗଲ ହାଣି ଦେଇ
ଚଟ୍ଟେଶ୍ୱରେ—ବାଙ୍କୀ ପଗଡ଼ି ମୁକୁଟ ବାନ୍ଧି,
ଖୋର୍ଦ୍ଧା ଦର୍ପଣ ପ୍ରମାଣ ଗାଇ—
ଦୁଃଖ କାରୁଣୀ ନରେଖ ହୋଇ
ବାଙ୍କୀ ଉମପଡ଼ା   ସରଣ୍ଡା ଚୂଡ଼ାରେ ଚଟ୍ଟୋପୁଣୀ ବୋଝୁଣ ମରଇ ।
ଅଶ୍ରୁଂଗ ଅଶୃତ ଭ୍ରୂହନ ନପତ, ଶୋକେ କମକମ ହେଲବାଇ
ମହାନଦୀ ମହାପ୍ରବାହେ କାନ୍ଦିଲ
ପାଞ୍ଚସେକ୍ଡ଼ା ଯୋଗୀ କେନ୍ଦର ବଟିଣୀ
ଶୋକ କାରୁଣ୍ୟ ଉଚ୍ଛୁଳେ ଯହିଁ ॥
କାଶୀବାସିହର ଘନେ ଦୟାକର   ଗଣନାଥ ପଦ ଦାଅ କହି
ନବକିଶୋର ଶ୍ରୀପଦ ଧ୍ୟାୟି ॥



# ରାଜବଂଶ ବର୍ଣ୍ଣନା

## ( କେଳାକେଳୁଣୀ ଗୀତ )

କହ ଦେଖି ମୋର ଗାୟକ ରତନ,   ଶ୍ରୀଚନ୍ଦନ ବଂଶ ଯଶ
ଆଦ୍ୟପ୍ରାନ୍ତେ ଜାଣି କେତେ ନୃପଥିଲେ,   ଚହିଁ ପାଇବୁନି ପରତୁଷ
ନବନାଗରରେ—ଦେଖ ଚଉଦଗେ ଗଣକ୍ଷଣ ।
ଗଣିକ ପାଶବୁ କାମହିମା କେତେ
ତେବେ ପାଇବୁ ସଭାରେ ଯଶ ॥
କି କୁଳବା ଗୋତ୍ର କାହିଁବା ଆଗତ କେ ମଉଡ଼ମଣି କେମନ୍ତେ ପାଳିଲେ ପ୍ରଜା
ଋଚକ ପାହାଡ଼େ ଟେକିଥିଲେ ନାମେ କେହୁ ବା ବାନ୍ଧିଲେ ଧ୍ୱଜା ॥

କହ କହ ମୋ ଗାୟକ ରଜା
ତେବେ ବାଜବ ଆନନ୍ଦ ବାଜା—ନାଗରରେ
ରଜା ପରଷିବେ ଝିଗିଝିଜା ॥

ଶୁଣଲେ ନାଗରୀ ଶୁଣ ମୋର କଥା
ଚନ୍ଦ୍ରବଂଶୀକୁଳ ଚନ୍ଦ୍ରମା ଶିରଚନ୍ଦନ
ଧଳଭୂମୁଁ ବଳଭଦ୍ର ଆସିଥିଲେ ଦେବୀଙ୍କ ପ୍ରିୟନନ୍ଦନ
ରସ ସାଗରଲେ—ହେଳ ଶୁଣ ପୁରାଣ ବିଧାନ
ରଜା ରାଇଜେ ପରଜା ଧନଲୋ ଜୀବଧନ ॥

ଗଜପତି ରାଜା ସନନ୍ଦ ଲେଖନେ ଶାସିଲେ ଏ ବନ୍ଧ ମନ୍ତ୍ରୀ
ମନ୍ତ୍ରମଣ୍ଡଳରେ ଇତିହାସ କହେ, ଅମାଇଁ ଠାରୁ କମାଇଁଲେ, ଗୁରୁଚନ୍ଦ୍ରମା ମୁହିଁ
ଆଜ ବଳେ ମାତ ଚଳିକାପ୍ଟିଲେ ମୋର-ପରାଣ ସଙ୍ଗୀ
ମନ୍ଦରଆଳୁ ମନ୍ଦର ବାଇ ॥

ଦେବାଲେଖ୍ୟ ଦେବ ଭାନୁ ନୃମଣି
ଚତୁର୍ଥ ଭାନୁଦେବ ଚରମାଣି
ଭୌମ୍ୟବଂଶ ପୁତେ ସିଂହସନ୍ତକେ, ସିଂହନାଥପୁର ସନନ୍ଦ ଲକ୍ଷେ
ଧଳବଳ ଅଗ୍ରଭୁଲେ, ଶ୍ରୀଚନ୍ଦନ ପଦଟୀକା ବମଣ୍ଡନେ
ରଜା ରଜଲେ ଏହ୍ୱ ମୁଲକେଲେ — ଚମ୍ପାଝରା ଶିକୁଳ
ଘେନ ଘେନ ମୋ କଥା ଛଇଳରେ ଚମ୍ପାଝରା ଶିକୁଳ
ଦେଉଳକୁ ବଳେ ମୁକୁଶାଳ,
ଏକୁଏକ ରଜା ମହାବଳରେ ମୋର ନବଛଇଳ ॥

ରାଜା ବଳଭଦ୍ର ବୀର ମୁକୁଟ ପୁତ୍ରବୀର ମଣି ଅର୍ଜୁନରାଷ୍ଟ
ଯୁଧିଷ୍ଠିର, ରାମଚନ୍ଦ୍ର
ସିଂହଧବଳଙ୍କ ପୁତ ରତ୍ନମଣି ପୁରୁଷୋତ୍ତମ ନରେନ୍ଦ୍ର,
ସିଂହନାଥ-ପଦ ବନ୍ଦୁଥିଲେ ଜାଣି, ଗୁଣିଗଣ ବଦଗଧରେ
ମୋର କେଳିକଦମ୍ବ—ସିଂହଧ୍ୱଜା ଯା ବଢ଼ମାହ୍ଲଦ
ଚଦ ବଣକୁ କାଟନ୍ତା ଗଦରେ ମୋର କେଳିକଦମ୍ବ ॥

ବୀରଭାନୁ, ଜଗନ୍ନାଥ, ନୃସିଂହ,
କେଶରୀ, ହୃଷିକେଶ, ନୃପରାଜ
ମଧୁକରପ୍ର ଶ୍ରୀଚନ୍ଦନ, ଗନ୍ଧାପଦର ନୃଧନ
ଓଡ଼ିଶା ରଜା ଶକ୍ତିତା କାରଣ

ରାଣୀ ମୁକ୍ତାଦେଈ    କୂଳମୂଳେ ମୌଳି    ଝାମ୍ପୁଁ ଯାହାର ବିଧାନ
କାଳ କାଳକୁ ହେଲା ରତନରେ ଗଣ୍ଡି ଧନ   ॥

ରାଜା ରଙ୍କେଶ୍ୱର ଶ୍ରୀନାରାୟଣ,   ପୁତ୍ର ଅଷ୍ଟମ ଗୋସାଇଁ ମୋହନ
ଧର୍ମପ୍ରାଣ ନୃପ ତେଜ ତପନ,   ପୃଥ୍ୱୀମଣ୍ଡଳେ ଚାର୍ଥ ଶ୍ରୀଚନ୍ଦନ
ପୁଣ୍ୟଶ୍ଲୋକ ମହାପଣ୍ଡ ମହାଯନ୍ତ,   ରଣପୁର ଶାସନ ରତନରେ
ଚୂନା ମୁକୁତା ମଳ      ମଧ୍ୟ ଶ୍ରୀଚନ୍ଦନ ଶୋଭାଶାଳରେ   ॥

ଗଡ଼ପୀଠ ମନ୍ଦର ଉତଳ,   ଗୁରୁ ଧୋବେଇ ଚୂଡ଼ା ଶଙ୍ଖାଳରେ
ଏଣ୍ଟି କମଳା ବାଗ୍   କମଳମାଙ୍କୁ ନୋହିଲ ଭୋରରେ
କାମ କମାଣବାଗ ଯୂନାଦେଈ ସିଦ୍ଧି ଶୂନ୍ୟଯୋଗରେ   ॥

ଚବ ବିଷ୍ଣୁବଲ୍ଲୀକା, ବନ୍ଧମେଦାନରେ ହେଲ ଖେଳା
ମଧୁମାସେ ମଧୁବଧୂ ସଙ୍ଗୀତ,      କମାଇଁ ଶିରଚନ୍ଦନେ ପୂଜତ
ର ନାଦେବ ପୁତ୍ର ରତନ ଧନ   ଧନଞ୍ଜୟ ବର ଶୋଭାନୁପମ
ମଣି ମଥାମଣି ରାଣୀ ସାମନ୍ତାଣୀ   ଶୁକଦେଈଙ୍କର କରପଣରେ

ବଚଶ ଉପମା କାହିଁ,   ପ୍ରଜାବତ୍ସଳା ମୂରଙ୍ଗ ଧାତ୍ରିରେ
ବାଙ୍କୀ ହୋଇଛି ଧନ୍ୟ,   ଧନ ସୁଗୁଣେ ଶତ ମହାନରେ
ବିନୁନ୍ଦନେ ରାଜଲେ ନୂତନରେ, ଇତିହାସ ରଚନ ।

ଧନଞ୍ଜୟ ବାମା ଶୋଭା ନିରୂପମା ଶୁକଦେଈ ମହାରାଣୀ
ଓଡ଼ିଶା ରଜାଙ୍କ ସଜାସୁଜନନୀ,   ବରରମଣୀ ରତନମଣିଲେ
ମୋର ସଙ୍ଗମଲ୍ଲୀକା      ମଣି ପରଶମଣିର ଟୀକାଲେ
ଦେଶଦଶେ ବାଜେ ଜୟ ଢକ୍କାଲେ   ॥

ଧନଧାନ୍ୟ ସେବା ଲକ୍ଷ୍ମୀର ଉପମା ଦୟାବନ୍ତ ନାରାୟଣ
ମାତ ଚର୍ଚ୍ଚିକାପ୍ରି କରୁଣା ପ୍ରସାଦେ ମୁକ ଦୟାନିଧି ପରଲେ
ମୋର ପ୍ରେମପସର,   ଦକ୍ଷାସାଗର ସୁଧାଂଶୁ ଝର   ॥

ତାଙ୍କ ପୁତ୍ର କବି ପଣ୍ଡିତ ରଜା,   ଢେଙ୍କାନାଳ ଦେବ ଉପମା ଧ୍ୱଜା
ଢେଙ୍କାନାଳପୁର ଶାସନ ସୁଜା   କାବ୍ୟ ଶଶିରେଖା,   ରସ ବିଦ୍ୟୁଲେଖା
ଇଚ୍ଛାବନ୍ତକେ ମାତୃଛି ମଜାଲେ ମୋର ଗଜଗମନ
ବନ୍ଦ୍ରହ୍ମାକୁ ବ ଣ୍ଟିଆ ବଜାଲେ ମୋର ଗଜଗମନ   ॥

ଫକୀର ଭକତ,   କୃଷ୍ଣପ୍ରେମୀଯୁତ,   ଧ୍ୟାନେ ଶୁଣେ ବଂଶୀବାଜା
ହୋ ଭକ୍ତରଜା   ମଣିମହିମା ମଣିଙ୍କ ଧ୍ୱଜା   ॥

ବ୍ରଜ ବିହାରି ପୁରତ ଶାସକ   ବସନ୍ତ ବିଳାସି ରସଜ୍ଞ ପିକ
ବ୍ରଜ ବିହାରି କବିଶ୍ରୁ ରସିକ   ବଳେ ବଳିଷ୍ଠ ବିରାଧି ପଦକ
ମରହଟ୍ଟା ବଳବଳ ଦଳକ   ମୁକୁନ୍ଦଦେବ ସମରେ
ବଳ୍‌ସି ଭ୍ରାତ ହାଣି   ଜଇ, ପାନ୍ଥ ଖୁଣି   ମହିମାମଣି ବନ୍ଧଲେ
ଖଡ଼ଗକୁ ପଖାଳି   ଶତ୍ରୁମୁଖେ ଲଗାଇଲେ କାଳକେ   ମୋର ନବଛଇଳ ॥

ଦେବ ରାଜାଧି ରାଜ ପିତାମ୍ବର   ପ୍ରଜାକୁଳ ହିତେ ଘନ ଅମ୍ବର
ଭକ୍ତ ରତ୍ନମଣି ଚର୍ଚ୍ଚିକାଙ୍କର   ଶୂନ୍ୟମଣ୍ଡପ ନିର୍ମାଣ
ମହିମାମଣିଙ୍କୁ ମଣିଶଢ ତୋଳି ପିତାମ୍ବର ଶ୍ରୀଚନ୍ଦନକେ   ସଭି ହୋଇଛନ୍ତି ଧନ୍ୟ
ସେହ ପଣ୍ଡିତ ହୃଦଚନ୍ଦନକେ   ମୋର ପରାଣଧନ ॥

ହୋଇଲେ ଅନାଥ ରାଜା ଜଗନ୍ନାଥ,   ଫିରିଙ୍ଗି ରାଜ୍ୟ ଶାସିଲେ
ଦୀନବନ୍ଧୁ ହିନେ ଦୟା କରିଥିଲେ   ବିଶ୍ୱନାଥ ରଜା ହେଲେ
ହେ ଦେବ ଶ୍ରୀବିଶ୍ୱନାଥ   ସ୍ୱୀଶୂକେ କି ଉଦ୍ଧାରୁଛ ନେତ ॥

ନାରାୟଣ ରାଜା ଶ୍ରୀନର ପୁଙ୍ଗବ,   ଚନ୍ଦନ ବନ୍ଦନ ହେବେ
ଚର୍ଚ୍ଚିକାପ୍ରି ଘଣ ଦୋହଡ଼ାଇ ରହିଛି   କୃତଜ୍ଞ ଭକତ ଲୋକ
ହେ ସୁଧାକର ମଣ୍ଡଳ,   ପାଣ୍ଡି ଭକତଙ୍କ ଜୀବ ତାଳ ନେହ
ପାଣ୍ଡକନା ବନ୍ଧା କର୍ପୂର ହକଜିରୁ
ମାଳଣ୍ଡ ପାହାଡ଼େ କଏ ବା ଖୋଜୁଛି
ପୂର୍ବ ଅଇଶ୍ୱର୍ଯ୍ୟର ଗରିମାହେ   ଏବେ ବସୁଛି ଶାଳ
କବିନ୍ଦ୍ର ମୃଗେନ୍ଦ୍ର ଶ୍ରୀନବଘନ ଚନ୍ଦ୍ର   ପଦ ବିରଚଇ ଭାଳବଳ
ହେ ସୁଧିଜନ ମଣ୍ଡଳ,   କାଶୀବିନାମ୍ନିକେ,   କବି ... ॥



# ସଖି ନାଚ ଗୀତ

ଶୁଣିବେ ବିଦୂଷ ଜନ ମୁଗ୍ଧ ବିବରଣ
ବାଙ୍କୀ ଓଡ଼ିଶା ସମର କାହାଣୀ କାରଣ
ବ୍ରଜମଲ୍ଲୀକା ଗୋ,   କୁଞ୍ଜଲତିକା ଗୋ
ସତରଶ ଷୋଳବେଳ ହୋଇଲା ଦୁର୍ଦ୍ଦିନ ॥୧॥

ହୃଦ ବିଦାରକ ଏହି ବାଙ୍କୀଗଡ଼ ପୃଥ୍ୱୀ
ବନଦୁର୍ଗ ଉର୍ବୀଶିର ରାଜ ମହୀପତି
କାଳେ ହୋଇଲେ ନିଧନ,
ହାହାକାରେ ଭରିଗଲା ଚଉଦ ଭୁବନ ॥୨॥

ଖୋରଧା ନରେଶ ଆତତାୟୀ ମୁଣ୍ଡପଣେ
ପରାଣ ହାରିଲେ ରାଜା ଶ୍ରୀଚନ୍ଦନ କ୍ଷଣେ
ଶୁଭେ ଆକୁଳ ରୋଦନ,
ରାଣୀ ଶୁକଦେଈଙ୍କ ହେଲେ ମୂର୍ଚ୍ଛିତ ପ୍ରାଣ ॥୩॥

ରୂପଗୁଣେ ବଇଦେହୀ ଧନଞ୍ଜୟ ବାମା
ଲୋତକ ଶ୍ରାବଣେ ହସି ହସିଲକ ଉମା
ବ୍ରଜମଲ୍ଲୀକା ଗୋ,   କୁଞ୍ଜଲତିକା ଗୋ
ଶିରହରା ସୁଷମାର କି ଦେବା ଉପମା ॥୪॥

ବାହୁନି ବାହୁନି ପ୍ରିୟ ପତିଗୁଣ ଗଣି
ଶିରେକର କରୁଡ଼ିଲେ ଜଳାଇ ମୂର୍ଚ୍ଛା
ବ୍ରଜମଲ୍ଲୀକା ଗୋ,   କୁଞ୍ଜଲତିକା ଗୋ
ହା ନାଥ ହା ନାଥ ଏବେ କି କରିବି ପୁଣି ॥୫॥

ମନ୍ତ୍ରୀମନ୍ତ୍ରଣା ଦାୟକ ବକ୍ସି ବେବର୍ତ୍ତା
ଯନ୍ତ୍ରଣା ଦାୟକ ହେଲା ଭର୍ତ୍ତାବିନା ଏକା
କୁରରି କରୁଣ ଗୀତ ଶୁଣିଲେ ଏକା ଏକା
କି କରିବେ ଦୟାନିଧି ବାଳୁତରେଟି ଏକା ॥୬॥

ପାଇକ ବଳ ପ୍ରବଳ ହେଲେ କି ଦୁର୍ବଳ
ମନ୍ଦବୁଦ୍ଧି ଗୋପିନାଥେ ଦଳିବା କେବଳ
ବ୍ରଜମଲ୍ଲୀକା ଗୋ, କୁଞ୍ଜଲତିକା ଗୋ
ଖଳବଳ ବିନାଶନେ ହେଲେ ସେ ଚଞ୍ଚଳ ॥

ବୃଦ୍ଧ ବେବରଥାଁ ଖିନ୍ନ ବାରତା ପ୍ରମାଣି
ଅଧିର ରାଣୀଙ୍କ ଶୋକ ବିକଳ ବରଣି
ବ୍ରଜମଲ୍ଲୀକା ଗୋ, କୁଞ୍ଜଲତିକା ଗୋ
ରାଇକରୁ କଛି ଅଂଶ ଦେବାରେ ବଖାଣି ॥

ନୃପଲୋଭ ପାପସ୍ତୂପି ନରୃମ୍ପା ଲମ୍ପଟେ
ସନ୍ଧି କରିବା କି ହୀନ ଦୁର୍ବଳତା ଘଟେ
ବ୍ରଜମଲ୍ଲୀକା ଗୋ, କୁଞ୍ଜଲତିକା ଗୋ
କି କହିବେ ପୂର୍ବଶୂର ସକଳପ ପାଠେ ॥

ମହାମାୟୀ ସେ ରାଣୀ ପ୍ରଚଣ୍ଡ ଚଣ୍ଡୀକା
ଦଗଧନ ହୃଦୟର ପରାଣ ନାଟିକା
ବ୍ରଜମଲ୍ଲୀକା ଗୋ, କୁଞ୍ଜଲତିକା ଗୋ
ଗର୍ଜିଲୋଡ଼ିଲେ କେବଳ ଶତ୍ରୁ ରକ୍ତଟୀକା ॥

ନରପେନ୍ଦ୍ର ଖରପଣେ ନ ମୁହିଁଲା ରଣେ
ଶୃଗାଳ ପରି ପଛରୁ ଚୁପକାର ଶାଣେ
ବ୍ରଜମଲ୍ଲୀକା ଗୋ, କୁଞ୍ଜଲତିକା ଗୋ
ମୋ ପତିଙ୍କୁ ହତ୍ୟାକଲା କହ କି କାରଣେ ॥
ପତିହନ୍ତା ପ୍ରତିଶୋଧ ପ୍ରତିହିଂସା ଡାକ
ପାଞ୍ଚଖଣ୍ଡା ପାଞ୍ଚଖଣ୍ଡା ଟେକିବାକୁ ଟେକ,
ବହ୍ନିମାନ ଶିଖାତୋଳ
ଉତ୍କଳ ଶତ୍ରୁକୁ ଧାଏଁ ଚର୍ଚ୍ଚିକାପ୍ରୀ ବାଳୀ ॥
ପିତୃ ପିତାମହଙ୍କର ଶାଣିତ କୃପାଣ
ଭୀରୁପଣେ କଳଙ୍କିତ କରିବା କି ଜାଣ
ବ୍ରଜମଲ୍ଲୀକା ଗୋ, କୁଞ୍ଜଲତିକା ଗୋ
ସିଂହର ଘରଣୀ ପିବ ବଣ୍ଟକେଶରଣ ॥

ଅବଶ୍ୟ ମରିବ ଧନେ କାଳତ ମରିବ
ବଳୀର ପଦ ଲୋଡ଼ନେ କ ଯଶ ପାଇବ
  ବ୍ରଜମଲ୍ଲୀକା ଗୋ,  କୁଞ୍ଜଲତିକା ଗୋ
ପ୍ରାଣରଙ୍କେ ଶରକାଳ ମୁଁ କ ବଞ୍ଚିଥିବ ॥

ବନା ଯୁଦ୍ଧେ ଲୁହଲଦ୍ଧ ନୁହେଁ ଶିତଳନ
ନଦେବ ନଦେବ ମନ୍ତ୍ରୀ ଅମାତ୍ୟ ଏ ଶୁଣ,
  ବ୍ରଜମଲ୍ଲୀକା ଗୋ,  କୁଞ୍ଜଲତିକା ଗୋ
ନେତ୍ରରୁ ନେବନ୍ତି ରତୀ ଶୁକଦେଈ ଜାଣ ॥

ପ୍ରସାଦ ସଇନ କୁଳ ଦୁର୍ମଦ ଚେତନ
ମହ୍ଲି ବାଜଣା ବାଜିଲି ଗଡ଼ଦାଣ୍ଡେ ଘନ
  ବ୍ରଜମଲ୍ଲୀକା ଗୋ,  କୁଞ୍ଜଲତିକା ଗୋ
ଝଙ୍କର କୁନ୍ତ ବରଛା ଶାରଙ୍ଗି ଗର୍ଜନ ॥

ବୈଧବ୍ୟ ଦହନ ମୁକ୍ତ କୁନ୍ତଳ ଝଟିକା
ପତିଭକ୍ତି ନିଦର୍ଶନ ଲୋତକ ମାଳିକା
ରକ୍ତପଣତ କମରେ ଉଞ୍ଚିଭିଡ଼ ଏକା
ବଜାଇଲେ ବନ୍ଧୁ ଢକ୍କା ଗୋ ॥



# ପତର ସଉରା ଗୀତ

କାଣ୍ଡ କୋଦଣ୍ଡ ଏ ମାର୍ଗଣ ନାଦ
ଧନୁ ବା ନାରାଚ ଏକା ଶବଦ
ଦ୍ୱନ୍ଦ୍ୱରେ ସଜାଗ ବାନ୍ଧନ୍ତି ବନ୍ଧ
ଏକାଗ୍ରମଣେ ଧନୁର୍ବେଦ          ବଳର ବନ୍ଦନା କରନ୍ତୁ ଆଜି
ସର୍ବେ ଡ଼ାକ ଜମ୍ବୁ ହରଶିବ          ବାଜୁ ବାଜୁ ରଣ ବୀର ବାଜେଦ ॥

ଅର୍ଜ୍ଜୁନ ଗାଣ୍ଡିବ, ବିଷ୍ଣୁ ସାରଙ୍ଗ
ଭରତ ବାହୁଳି ହୋଇଛନ୍ତି ଯୋଗ
ତ୍ର୍ୟମ୍ବୀ ନିସୂଦନ ଭାର୍ଗବ ରାଗ
କାଳାନ୍ତକ ଭୀମକୁଠାର ସଙ୍ଗ
ବାସବ ଧନୁରେ ଲଗିଛି ରଙ୍ଗ
ଲକ୍ଷଭେଦ ଶରେ          ଶ୍ରୀଗୁରୁ ପଦ୍ମରେ
ଆଜ ଶିଖିଯାରେ ବୀର ଯୋଗ ॥

ଲାଙ୍ଗୁଳହତା ନାଗୁଣୀ          ଶାବକହରା ବାଘୁଣୀ
ଧାଉଁଲ କେଶରୀ ମଣି          ବଜ୍ରକୁ ଘଡ଼ଘଡ଼ ଆଡ଼ିଣି
ଘୋଷନ୍ତୁ ରଣୀଦେ ॥

ହେଲେଣି ଯେତେହେଁ ବୃଦ୍ଧ          ଅସ୍ଥି ଚର୍ମ୍ମ ତବ ହେଲକ ରୁଦ୍ଧ
ବୀରସଣ୍ଢା ଜାଣି ଗୁରୁ ଦୁର୍ମଦ          ସିଂହକାନ୍ଧେ ବାଡ଼େ ଶୃଗାଳ ଖେଦ
କହ ବୀର ମନ୍ତ୍ରୀ ବୁଧ
ଦେଶମାଟି ଆଉ ପ୍ରିୟ ପ୍ରଜା ମୋର          ଶତ୍ରୁଚରଣେ ହୋଇବେ ବଧ
ଏହା ନୁହଁଇଁ କ ଅପବାଦ ॥

ସଂହାର କରହେ ଶତ୍ରୁ,   ନାହିଁ ହେଲେ ହେଉ ମୃତ୍ୟୁ
ଏ ଯୁଦ୍ଧ ନେତୃତ୍ୱ ନେବାର ହେତୁ
ସ୍ୱୟଂ ମହାରାଣୀ ପାଟ ମହାଦେଈ,   ପାଟଖଣ୍ଡା ରାଜେହସ୍ତୁ ॥

ବଜାଅ ଯୁଦ୍ଧ ନାଗରା          ସଧାର ସାମନ୍ତେ ଆସନ୍ତୁ ଭାରା
ବକ୍ସି ବଷୋର୍ଧିଙ୍କ ସମର ଜ୍ୱାଳା   ସ୍ୱାମୀ ସ୍ୱଚ୍ଛେଦର ତତଲ ଲୁହକୁ
ଓଳର ଖଣ୍ଡା ଶିତଳା ॥

ଦନ୍ତକଇ ଦଳବେହେରା    ଜେଠୀ ପାଇକରାଧାଳ ଆଗନ୍ତା
ଦକ୍ଷିଣ କବାଟ ଜାଉ    ଦଣ୍ଡବାହୁ କାର୍ଣ୍ଣିଡ଼ରେ ଅଧାନ
ଯୁଦ୍ଧ ହୋଇବ ପାହାଲେ ଗାନ୍ତନେ ଘରଟିଙ୍ଗ ।
ରାଣୀଙ୍କ ଶ୍ରୀମୁଖ ବାଣୀ    ହଷ୍ଟକେଶ୍ୱରଙ୍କ ବାହୁଦ ଦେଶି
ନଖାଇଧ୍ୟ କପାଳ ଜାଳନ୍ତ ଜାଣି ।

ସଙ୍ଗସେନାବ୍ୟୁହ ହୁଙ୍କାର ଶବଦ    ରଣଲଚ୍ଛି ନପାର ଗଡିନେ
ଘର ବନ୍ଧାଣ ଠମକ  ଘଣ୍ଟି ଘାଗୁଡ଼ି ଝନକ ଝଲଝେଣି
ବଇରେ ଦେଇ ଧମକ  ବାଟକୁ ବାଣୁଆ ଡ଼ାକ
ଶାଳବଣ ହେଲେ,  କୁଣ୍ଢେଇଲା ଟାଙ୍ଗି ହେଲା ଲକଳ ମୁଳକ ॥
ବେକମୋଡ଼ ସିମା ପଥର କନ୍ଦଳ ରଣନାଦ କଞ୍ଜିର କ
ରଣରଙ୍ଗା ମାଆ ରଣାସୁର ଶବେ,  ବଇରେ ମୋଡ଼ିଲା ଠାକ
ତାତେର ଶୋଣିତ ଖର୍ପର ଡ଼ାକ ॥

ମହାପର୍ବତରୁ ମହାବଳ ବାଘ ଗରଜନ ଦୁଲୁ ଦୁଲୁ
ବନ୍ଧୁଣେଇ ଗୁହା ପ୍ରତିଶବ୍ଦ ଡ଼ାକେ,  ଅଙ୍ଗ ଝକାଳେ କମ୍ପାଇ ମନ
ଲହଲହ ଜିହ୍ୱା ଗ୍ରାସକରିବା ହେଲା ଏବେ ସରବଟି ରଣଟଙ୍କ ॥

ଶୋଳରେ ଛକରୁ ଖାଟେଲର ବେକରେ    ଖୋର୍ଦ୍ଧା ପାଇକ ରଣପୁଣ୍ଡ ନାଳି
ବାଙ୍କୀ ସନେଇଙ୍କ ସିଦ୍ଧମନ୍ତ୍ରୀ ପଣ,  ଓଡ଼ିଶା ମୁଲକେ ଡ଼ାକ
ଡମପଡ଼ାମଡ଼ ସରଣ୍ଡା ଚୂଡ଼ାକୁ ଶତ୍ରୁ ହଲାଇ ନପାରେ ବେକ ॥

ତୁଳସିପୁରକୁ ସାରୁଅ ନଗର    ରୋହୁତ ଜାଳିଲ ଝଳ
ଗଜପତି ରାଜା ଗୋପିନାଥ ଦେବ    ଦେଖାଇଲେ ଯାହାବଳ
ଧନଞ୍ଜୟ ଘର ଯୁଦ୍ଧ ଗ୍ରୁଉଣିକୁ,    ହୋଇଗଲେ ସତ ନାଳ
ଆସି ପୋଟିଛୁ ବିଷାଦ ବେଳ
ବିଶ୍ୱାର୍ଥପସ  କାଶି କପିଳାସ    ଦଣ୍ଡପାଟୁଆ ଜକତ ତେନ
ବାଣୀ ବାଗ୍ମୀକା ଭାଷା ବର୍ଣ୍ଣ ଠୀକା  କବକେଶରେ କେତେନ ନିଳ ॥



# ଯୁଦ୍ଧ ଅଭିଯାନ ଗୀତ

ବାଜେ ରଣତୂରୀ ସମର ଦୁନ୍ଦୁଭି ଶୃଙ୍ଗ ଶିଙ୍ଗା ଚଅଁଳେ
ଚଣ୍ଡୀ ଚାମୁଣ୍ଡାଙ୍କ ଶବ ମତୁଆଳେ,    ଢୋଲକାଠ ଗରଜିଲା
କାହିଁ ଅଛହେ ପାଇକ ପିଲା •
ବୀର ରକତ ଆଜକୁ ମୂଲ ॥

ରାଣୀ ଶୁକଦେବଙ୍କ ରଣେ ସର୍ବସିଦ୍ଧି    ପାଞ୍ଚ ଅକ୍ଷୋହୋଇ ଛୁଡ଼ା
ହାଲ ଖଣ୍ଡାଘାର ବୀର ବର୍ମଠାଣି    ଆଜ ଶୋଇଯିବେ କୋଟି ମଡ଼ା
ସିଂହନାଦୁ ସିଂହବାହିନୀ ଧାଇଁଛି    ଆଜ, ମାଡ଼ିଛି ବାହୁଆ ଖଡ଼ା
ଏକାଳେ ଖୋର୍ଦ୍ଧା ପାଇକ    ମାରୁଥିଲେ ବୀର ଡାକ—
ବୀର ଗଜପତି ପାଇକ ଜାତି ମୁଁ ତୁ ଛୁର ସେବା ସାମନ୍ତ
ସିଂହକୁ ଶାର୍ଦ୍ଦୁଳ ହେଲେ ଚଢ଼ାଗଡ଼ା    କେହୁ ଟଳିଲା କାଳର ହାତ ॥
ରାଜା ରାଜେଶ୍ୱର ଶିରଚନ୍ଦନ    ବୀର ବାତଘାତ ସିଂହ ଲାଞ୍ଛନ
ପାଇକେ କୁହାଟ ଦେଲେ
ମାରମାର ହାଣ ଦଇତକୁଳଙ୍କୁ    ଘଣ୍ଟି ଘାଗୁଡ଼ି ଯା ଗରଜିଲେ
କାଶିରେ ନୃପତି ମହେନ୍ଦ୍ର ଅଶ୍ୱପତି,    ମହାରାଷ୍ଟ୍ରେ ଛତ୍ରପତି
ଓଡ଼ିଶା ମୂଲକ ରାଜ ବଡ଼ିମାକୁ ବୋଲାଅ ଯା ଗଜପତି
ଗଜମୂର୍ଖ ବୁଦ୍ଧି ଗୁଡ଼ିକ ପାମରେ    ବୀରେ ଲଢ଼ନ୍ତି ହାତାହାତି
କୀର୍ତ୍ତି କରିଛ ଅବା ଅକୀର୍ତ୍ତି ॥
ଠାକୁର ଯାହାଙ୍କ ମହିମାମଣି    ମହାନଦୀ ସ୍ରୋତ ବହେ ଉଜାଣି
ପର୍ବତ ମହାପର୍ବତ
ରଥୀ ମହାରଥୀ ରାଉତ ମାହୁନ୍ତ    ଆଜ ଅକାଳେ ହୋଇବ ହତ ॥

ବୀର ମରେ ବା ମାରିବା ନୀତି
କ୍ଷତ୍ରୀ ରକତ ଉଠଇ ତାତି—
ପେଟଗୁଣେ ପଶୁଶବ    ବାହୁବାରେ ତାକୁ ବୋଲିବା କି ବୀର ଖ୍ୟାତି ॥

ପାପି ହେବହେ ଯମର ସାଥି    ଶୁଣିବ ଟାହିଯାଉଛି ରାତି
ବାଘମାରି ଚଉରିକ    ପୋଡ଼ାଡ଼ିହ ଗଅଁ ପୁରକୁ ଲକ୍ଷି
ସମରେ ସିମର ସିମା ଜଳଗଲା    ବୀର ପାଇକେ ଯୁଝିଲା ହୋକ
ଶକୁନ ବଳୁଆ ହେଲେ ଠରାଠରି ଯୁଝି ପଡ଼ିଆ ଖେଳବାନକି ॥

॥ ୩୧ ॥

ଉତ୍ତର କବାଟ ନବଘନ ଶିର କାନ୍ଧରୁ ପଡ଼ିଲା ଝଣ୍ଡ
ବାଙ୍କୀ ପାଇକଙ୍କ ଢାଲ ତଲ୍ୱାର ଭସିଲା ରକତ ବଢ଼ି —
କୋଟି କବନ୍ଧ ପଡ଼ିଲେ ଗଡ଼ି
ଢୋଲିଆ ଦଳର ଢୋଲ ଠମକକୁ କର୍ଣ୍ଣପଟଳ ପକାଏ ଛାଡ଼ି ॥

କଳାପଥରକୁ ଧଳାପଥର • ଜଳପୋଡ଼ ହେଲା କି ନାରଖାର
ରେଢ଼ିଆପଲ୍ଲୀ ପାଇକ, ଖରପଟଣେ ଯେନ୍ତୁଡ଼ାକ
ଡ଼ାକବଜା ଖରେ ଠଳିତ ପଡ଼ିଲେ
ମାଣିବନ୍ଧଗଡ଼ୁଁ ମଣିମା ବାନ୍ଧିଲେ, ଶିରହରାଇଲେ କୋଟିଲୋକ ॥

ପୁଇଁରୁ ପୁଇଁରୁ ମାରିଲା ଗନ୍ଧ ସଢ଼ା ଶବକୁଳ କରୁଣ କାନ୍ଦ
ଘରେ ଘରେ ଚଣ୍ଡୀଧୂମ ହକାଳେ କି, ଦଇବର ନିରବନ୍ଧ
ଦମ୍ଭାମାମ୍ଭା ହୀନ ଶାସନ ପଣକୁ, ପ୍ରଜା ଜୀବନ ଜାଳେ ବାରୁଦ ॥

ବଗରୁ ଆଗତ ଯେ ବେଗୁନିଆଁ, ବଗଳାମୁଖି କି ଜାଳିଲେ ନିଆଁ
କୁଶ ତୃଣଜଳା ପ୍ରାୟ
କୁଟପଲ୍ଲୀ ଭୂଇଁ ମୁଣ୍ଡଦେଉଳକୁ, ଶୁକଦେବଙ୍କ ହୋଇଛି ରାୟ
ବନସିକ୍ତ ଧମା କମାଇ ମୁର୍ଦ୍ଧଙ୍ଗ, ଖଣ୍ଡା ପଖାଳିବା କରେ ଲୟ ॥

ବଢେଇ ଠାର୍ଗିର ବାଘ ବିଜନ୍ମା, ଦାରୁଠେଙ୍ଗୁ ମତ୍ତଦନ୍ତା
ଦାଣ୍ଡିମାଳ ଦଣ୍ଡ ଅସିପତ୍ର ଖଣ୍ଡ ଆଜି ଯୁଦ୍ଧରେ ହୋଇଛି ଚୂନା
ମୁଣ୍ଡେ ମୁଣ୍ଡଗୁଇ ମୁଣ୍ଡ ଦେଉଳରେ—
ଶୁକଦେବ ଉଡ଼ାଇଲେ ବାନା ॥

ଅସ୍ତ୍ରବାଦଲର ଅମ୍ବର କଜ୍ଜଳ ରାଣୀ ଝଟକ ରସାଣେ ଅନା ।
ରକ୍ତ ଉତ୍ତରକୁ ଚପୁଡ଼ ଚପୁଡ଼ ବାଉଥିଲେ ସେ ପ୍ରଳୟ ବାଣା
ମନ୍ତ୍ରୀ ଗୋବନ୍ଦ ଶରଣ ବେବର୍ତ୍ତା ପଟ୍ଟନାଏକ ଗ୍ରୀବାଣ
ଖୋର୍ଦ୍ଧା ମନ୍ତ୍ରୀବର ଶୃଙ୍ଖଳେ ନିକର
ବେଣୁ ଭ୍ରମରେ ନଥାଇ ପ୍ରାଣ ସବୁ ଘଙ୍ଗିଲା ଦଇବ ଠାଣ
ଗଜପତି ରାଜା ପାଇବାକୁ ସଜା
ବାଙ୍କୀ ଦରବାରେ ବିଜୟୂନ ॥

ଜଂପୁ ବରୁଣେଇ ଜୟ ମା’ ଚର୍ଚ୍ଚିକା ମଣିଫଣି ଚେଜେ ବଳାୟୁନ
କବି କୁଳମଣି ନବୀନ ବନ୍ଧାଣି ପଦଛନ୍ଦ କରେ ବିରଚନ ॥



# ଶେଷ ବର୍ଷର ଆଜ୍ଞା ଗୀତ

ଶୁଣ ଆଜ ଶୁଣ ଏ ସାରା ଜଗତ   ଯେତକ ଜଉଣୀ ଯାଇ
ଲକ୍ଷେ ରାଜଟୀକା ମଉଡ଼ମଣି,  ଚେଳିଁକା ଚରଣେ ଶୃଙ୍ଖଳ ଜାଇ,
ଝରାଧି ଝାରବର ଗଜପତି, ତାହାଙ୍କ ବର୍ଷରେକେ ସାମରା,
ସର୍ବେ ଦରବାରେ ଛତ୍ରଧାଇଁ
ଦୋଷି ବଧାନେ କ ଦଣ୍ଡଥାଇ   ॥

ଲୁଳିତ କୁନ୍ତଳ  ପରାଣ ବିକଳ   ଧନଞ୍ଜୟ ବାମା ବିଜେ
ଘୁମୁକରଣଙ୍କ ଘୁମୁଆଁ ଡ଼ାକରା କାହାଳୀ ସତତ ବାଜେ
ଦରଦର ବାରି ନୟନ କମଳେ
ଶିଶିରେ କମଳ ଦଳତ କ  ଝଲେ
ରାଣୀ ବିଜେ ଦରବାର କାର୍ଯ୍ୟେ   ॥

କୁଣ୍ଡପଲ୍ଲୀ ଟାଙ୍ଗି ମୁଣ୍ଡ ଦେଉଳକୁ ଶତ୍ରୁ ମୁଣ୍ଡଘୁଇ ଗଲେ
ଧନଞ୍ଜୟ ରାଜା ସରଗେ ଥାଇବା ଫୁଲ ବରଷା କରିଲେ
ଶୁକ ମହାଦେଈ ବର୍ଷର ଏମନ୍ତ କଲେ   ॥

ଘୁମୁ ସିନା ଦୋଷି ମୋ ସ୍ୱାମୀହନ୍ତା ହେ ଗଜପତି ମହାରାଜା
ପ୍ରଜା ପ୍ରତିନିଧି ବର୍ଷର ଷବେକେ କେହ୍ନବା ପାଇବ ସଜା

ଉତ୍କଳର ମହାରାଣୀଙ୍କ ବୈଧବ୍ୟ ଭୁଲେ—
ମୋ ଯଶ କ ଥାଇ ଭଲେ
ମୋ ଭଳି ବିଧବା ନରେଖ ଭାଗ୍ୟକୁ
ଆନଭାଗ୍ୟ ତାହା ନଦେଖୁ ଏ ଚକ୍ଷୁ
ଦୋଷି ବର୍ଷର ଚରମ ଜାଳେ   ॥

ଗୋପୀନାଥ ଦେବ ଶ୍ରୀକରୁ ଶିକ୍ଷା        ଶୁକ ମହାଦେଈ ଦେଲେକ ମୁକ୍ତା
ଭୂଷିଲେ ଦେହ ଗଜପତି
ଏକେମାନ ସ୍ମୃତି ଅଙ୍ଗଳାଗେ କମା        ବହନ୍ତି ଅପକାରଙ୍କ
ନୁହଁ ଆଜି ମୁକ୍ତା ଗୋଟିଏ ବନ୍ଧୁର        ଯେନାହେଉ ମହାମତି ॥

ଫଉରୁଷହର ରାଜା ଗୋପିନାଥ ମଥା ହେଲା ଅବନତ
ଧନ୍ୟ ଧନ୍ୟ ରାଣୀ ମଣ୍ଡଳମଣି ଗୋ ନମାର କାନ୍ଥୁ ଛ ସତ
କ୍ଷମା କଲେତାରେ କ ମହତ
ଅପରାଧୀତ ଯୋଗ୍ୟ ନହତ   କୀର୍ତ୍ତି ଗାଇବ ତୁମ୍ଭ ଜଗତ ॥

ଗଜପତି ରାଜା ମର୍ଯ୍ୟାଦା ସ୍ୱାଗତେ        ଅର୍ପିଦସ ଚୋଳକରେ
ବକ୍ସି ଦେବର୍ଣ୍ଣିଙ୍କ ମହିମା ବଳଣେ        ଦମ୍ପାନଧ ରାଜା ହେଲେ
ସଭାସଦ ମନ୍ତ୍ରୀ ଅମାତ୍ୟ ଏ
ରାଣୀ ଦେବ ଗୁଣ ଘୋଷି ଜୟେ
କ୍ଷମା ମୂର୍ତ୍ତିମନ୍ତ କାଳଜୟି ଗୀତ
ଚର୍ଚ୍ଚିକାଯୁ କ, ଗାଏ, ଅଭୟେ ॥

ସେହିଥି ସେବର୍ତ୍ତ ଇତିହାସ ଗିଞ୍ଜ        ଚର୍ଚ୍ଚିକା ଶୈଳ ସୋପାନେ
ରେଣୁକା ରକତ ତୃଷ୍ଣା ଶୁଖିନାହିଁ        ପର୍ଶୁ ପର୍ଶୁଧର ବଦଳନେ
ପିତା ପିତାମହ ରଚକ ଘର
ଧନୁର୍ବେଦ ଧନୁଷ୍ଟଙ୍କାର ଟେଳ,     ଘରମାଟି ବଭୂଷଣେ ॥

ରାଜଗୁରୁ ବନ୍ଧଗଲେ ଗଜପତି        କୃତ କର୍ମଫଳ ପ୍ରବଞ୍ଚନେ
ଲଜ୍ୟାନୁସଙ୍ଗତ ଅନୁତପ୍ତ ମନ୍ତ        ପ୍ରଜାପୂତ ଶିହରଣେ
ନତ ଶୁକଦେଈଙ୍କ ଚରଣେ ॥

ମହାକାଳ ଶିବ ଡମ୍ବରୁ ଫାଟିଲା
ବହ୍ନି ଶଇଳ କବା ଓଲଟିଲା   ମାଳଚନ୍ଦ୍ର ଦ୍ରଳମିଲା
ରାଣୀ ଶୁକଦେଈ ବୈଧବ୍ୟ ଶଡାକୁ

ବିଶ୍ୱ ଅଭିବାଦନ ବାଢ଼ିଲା,
ଆପେ ଜଳଧର ଜୀବନ ଶୁଭ୍ରଦେଶେ
ନାରୀ ! ନାରୀ ମହତ୍ତ୍ୱ ବୁଝିଲା ॥

ଦମ୍ପ୍ୟମାରମା' ସ୍ୱର୍ଗୀୟ ସୁଷମା    କରୁଣାର ସୁଧାଝରେ
ଶିବାଣୀ ମୋହିନୀ ଗଙ୍ଗାର ମିଳନେ  ବିଶ୍ୱଚେତନା ଉଠିଲ ଝଳି

ମହାଶକ୍ତି ନାରୀ ପ୍ରକୃତି ଗତି,
ଅନନ୍ତ କାନ୍ତିଂ ପୁରୁଷ ସମ୍ପୃକ୍ତ
ମାନବୀ ଯା ଚରାଚର ଇଙ୍ଗିତ
ଶ୍ରୀଦେବୀ ଚଣ୍ଡିକା ଚରଣେ ସତ
ସ୍ୱର୍ଣ୍ଣାକ୍ଷରେ ଆଜ ଖୋଳିଛି ଲେଖା..

ବାଣୀ ଶୁକଦେବଙ୍କ ବିଜୟ ଟୀକା
ସେତ ମାନବଙ୍କ ମନ୍ଦାକୃତି ପଦ,
ଗାଉଛି ଜଗତ  ଗାଏ ଜଗନ୍ନାଥ ମହୋଦଧି  ଚଢ଼ିଲ ଉଚ୍ଛଳି
କବିନ୍ଦ୍ର ମୃଗେନ୍ଦ୍ର ଶ୍ରୀ ନନ୍ଦନଚନ୍ଦ୍ର   ଗ୍ରନ୍ଥ ସମାପ୍ତିର ସ୍ୱଳ ସ୍ୱଳନ୍ଦେ ॥

● ସମାପ୍ତ ●

# ପ୍ରାଚୀନ ବାଙ୍କୀର ପରିଚୟ

ଦେବବାଣୀ ବାଗ୍ମୀତେ ପରମାନନ୍ଦ ଦାୟିନୀ ଚର୍ଚ୍ଚିକା ଋଚୀକ ସିଦ୍ଧପୀଠ ବାସିନୀ ପୁରାଣ ପ୍ରସିଦ୍ଧ ଋଚୀକ ମହର୍ଷିଙ୍କ ଆଶ୍ରମରେ, ତାଙ୍କର ଇଷ୍ଟଦେବୀ ଭାବେ ପୂଜିତ ହୋଇ ଆସୁଥିଲେ । ଋଚୀକ ମହର୍ଷିଙ୍କ ନାତି ଙ୍କର ନିର୍ବାଣ ଧାମ ମଧ୍ୟ ଏହି ପୀଠରେ ଦେବୀଙ୍କ ଲାଭକରି ପୁରାଣ ପୁରୁଷ ଭାବେ ଖ୍ୟାତି ଅର୍ଜ୍ଜନ କରିଥିଲେ । ବ୍ରହ୍ମାଙ୍କ ପୁତ୍ର ଭୃଗୁ ତାହାଙ୍କ ପୁତ୍ର ଚ୍ୟବନ— ଚ୍ୟବନ ମହର୍ଷି ଓ ସୁକନ୍ୟାଙ୍କ ଗର୍ଭରୁ ଔର୍ବ ମହର୍ଷି ଜନ୍ମଲାଭ କରିଥିଲେ । ମହାତେଜା ଔର୍ବଙ୍କ ପୁତ୍ର ଋଚୀକ ମହର୍ଷି ଏବଂ ରତ୍ନାକର, ଯେ କି ଦସ୍ୟୁ ଜୀବନରୁ ରାମାୟଣ ପ୍ରଣେତା ବାଲ୍ମୀକି ଭାବରେ ଭାରତର ପୂଜ୍ୟ ଋଷିଭାବେ ବନ୍ଦନୀୟ । ଅଗ୍ରଜ ଋଚୀକ ମହର୍ଷି ଧନୁର୍ବେଦ ପ୍ରବର୍ତ୍ତକ ନାତି ପର୍ଶୁଧରଙ୍କୁ ମହାବୀର ଭାବରେ ଗଢ଼ିଥିଲେ । ଋଚୀକ ମହର୍ଷି ବିଶ୍ବାମିତ୍ରଙ୍କ ଭଗ୍ନୀ ସତ୍ୟବତୀଙ୍କୁ ବିବାହ କରି, ତାହାଙ୍କ ଔରସରୁ ମହାବୀର ଯମଦଗ୍ନିଙ୍କର ଆବିର୍ଭାବ । ଯମଦଗ୍ନିଙ୍କ ପତ୍ନୀ ରେଣୁକା ସୁଦ୍ଧା ଋଚୀକ ସିଦ୍ଧପୀଠ ତଳେ ପୁଣ୍ୟସ୍ରୋତସ୍ୱିନୀ ଭାବେ ବିଦ୍ୟମାନ । ଏହି ପବିତ୍ରତର ପୀଠରୁ ପୁରାଣ ଯୁଗର କାହାଣୀରୁ 'ସପ୍ତଶତୀ' ଚଣ୍ଡୀପୁରାଣ, ଦେବୀ ଭାଗବତ, ଶିବ ପୁରାଣାଦିରୁ ଦୁର୍ଗା ମହିଷାସୁର ନିଧନ ଦୃଶ୍ୟଗୁଡ଼ିକ ଶୁଣିଲାବେଳେ ମହିଷାସୁରଙ୍କୁ ହତ୍ୟା କରିବାର ପ୍ରଳୟଙ୍କର ହୁଙ୍କୃତ ନିଶ୍ବାସରୁ ମଙ୍ଗଳାନାମ୍ନୀ ଦେବୀଙ୍କ ଆବିର୍ଭାବ ଘଟିଥିଲା । ମହିଷାର ଅନ୍ୟ ଦୁଇସେନା ରକ୍ତବୀଜ ଓ ରଣାସୁର ହତ୍ୟାକଲେ ଦୁର୍ଗା ତାଙ୍କ କପାଳାଗ୍ନିକୁ ପ୍ରଜ୍ୱଳିତ କରିବା ମାତ୍ରେ ଚର୍ଚ୍ଚିକା ଦେବୀଙ୍କ ଆବିର୍ଭାବ ହେବା ପୁରାଣରୁ ପଢ଼ିଥାଉଁ । ଶିବଙ୍କ ଜାୟା ସତୀଦେବୀ, ପିତୃଦେବ ଦକ୍ଷ ପ୍ରଜାପତିଙ୍କ ଅପମାନ ସହ୍ୟନକରି ଯଜ୍ଞକୁଣ୍ଡରେ ପ୍ରାଣ ବିସର୍ଜ୍ଜନ କରିଥିଲେ । ସେହି ମୃତା ପ୍ରିୟତମାଙ୍କୁ ଧରି ଶିବ ତାଣ୍ଡବନୃତ୍ୟରେ ନିମଗ୍ନ ହେବାରୁ, ବିଷ୍ଣୁଚକ୍ରରେ ସତୀଙ୍କ ମୃତପିଣ୍ଡ ଚୌରାଶି ଖଣ୍ଡ ହୋଇ ଭାରତର ନାନାସ୍ଥାନାନ୍ତରରେ ପତିତ ହୋଇଥିଲା ।

ସତୀଙ୍କ ଦକ୍ଷିଣବାହୁ ଏହି ପୀଠରେ ପଡ଼ିଥିବାରୁ ଏହି କ୍ଷେତ୍ର ଏକ ଶକ୍ତିପୀଠ ଭାବେ ବିଦିତ । ପଣ୍ଡିତ ନୀଳକଣ୍ଠ ରଥଶର୍ମାଙ୍କ ପ୍ରଣୀତ ପୌରାଣିକ ଅଭିଧାନ, ଚରିତ ଚିନ୍ତାମଣି, ଗ୍ରନ୍ଥଟି ଏହି ସବୁ ତଥ୍ୟ ପୁଷ୍ଟିଭାବେ ବଢ଼

ଉତ୍ପାଦେଷୁ ପୁରସ୍କ୍ରିକା । ପୁରାଣ ଦୃଷ୍ଟାନ୍ତ କଙ୍କାଳମାଳିନୀ ଭୀଷଣା ଚର୍ମମୁଣ୍ଡାନ୍ତ ଚର୍ଚ୍ଚିକା ପୂଜା ଶ୍ରୀମନ୍ଦିର ଠାରୁ ବହୁ ପ୍ରାଚୀନ ଭାବେ ଏହି ପୀଠରେ ପୂଜିତା ହେବାର ତଥ୍ୟ ସ୍କନ୍ଦ ପୁରାଣର ୧୧ ଅଧ୍ୟାୟରେ ବର୍ଣ୍ଣିତ । ପ୍ରାଚୀନ କାଳରେ ଜଗନ୍ନାଥ ଦର୍ଶନ ନିମିତ୍ତ ମାଳବ ଦେଶ ରାଜା ଇନ୍ଦ୍ରଦ୍ୟୁମ୍ନ ନାରଦଙ୍କ ଆଜ୍ଞାରେ ଚର୍ଚ୍ଚିକା ଦେବୀଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ ହୋଇ ବହୁ ଭକ୍ତିସ୍ତୁତିର ପ୍ରସନ୍ନ କରାଇ ଶ୍ରୀନୀଳମାଧବଙ୍କୁ ଦର୍ଶନ କରିବାର୍ଥେ ଏହି ପୀଠରେ ଜାଗଯଜ୍ଞର ଆୟୋଜନ କରିଥିଲେ ।

ସୀମାମୂଳକେ ଦେଶସ୍ୟ ବିଭଜନ୍ତ ବାନାନ୍ତରେ
ମାର୍ଗସ୍ଥା ଚର୍ଚ୍ଚିକା ପ୍ରାପ୍ତ ଚର୍ଚ୍ଚିତା ମୁଣ୍ଡମାଳସ୍ଥା
ଅବନ୍ତ୍ୟସ୍ତୁ ଇଥାନ୍ଦ୍ରଜା ବଚନଂ ନାରଦ ଆଜ୍ଞା
ସାଷ୍ଟାଙ୍ଗ ପାତଂଶ୍ଚ କୃତ୍ୱାଂ ଭୁକ୍ତାବାନନ୍ଦ ଚନ୍ଦନଂ
ଚରାଚର ଗୁରୁଦେବଂ ନୀଳାଚଳ ନିବାସୀ ନମଃ ॥

ରାଜା ଇନ୍ଦ୍ରଦ୍ୟୁମ୍ନ ମନ୍ତ୍ରୀ ବିଦ୍ୟାପତିଙ୍କ ଦ୍ୱାରା ପରେ ନୀଳମାଧବଙ୍କୁ ନୀଳାଚଳରେ ପ୍ରାପ୍ତି ହେବା ମାଆ ଚର୍ଚ୍ଚିକାଙ୍କର ବରସିଦ୍ଧି ସର୍ବାଗ୍ରେବନ୍ଦନୀୟ । ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ ଓଡ଼ିଆ ସାହିତ୍ୟର ଇତିହାସରେ ମଧ୍ୟ ବାଙ୍କୀ ମାର୍ଗରେ ଉତ୍କଳନନ୍ଦାଧାଜା ଜାଗମଙ୍କ ପଣ୍ଡିତମଣ୍ଡଳୀ ସମାବେଶରେ ନୀଳମାଧବ ସାକ୍ଷୀ ହୋଇଥିବାର ଲେଖିଛନ୍ତି । ଇତିହାସ ପୁରାଣରେ, ପୂଣ୍ୟତୋୟା ରେଣୁକା ତୀର୍ଥର ବର୍ଣ୍ଣନ, ବାଙ୍କୀପାଇଁ ମହାନ ସୌଭାଗ୍ୟରେ ଐତିହ୍ୟ ଘୋଷି-ଅଛି । ଦେବୀଙ୍କର ପ୍ରାଗ ଯୁଗରର ବେଶ ପରିପାଟି ଅଙ୍କମଧ୍ୟ କରୁଛି ବନ୍ଦନାହିଁ । ଦେବୀଙ୍କର କଟିବନ୍ଧନ ପ୍ରତିମା ଅଷ୍ଟଭୂଜା, ଖର୍ପରହସ୍ତା— ସର୍ପାଟକ୍ର ଆଭରଣା ମୁଣ୍ଡମାଳା ବିଳମ୍ବିତା କନିଷ୍ଠ ଅଙ୍ଗୁଷ୍ଠି ଦଶନ ବିମଜ୍ଜନା ବୌଦ୍ଧିକ ଯୁଗ ଓ ତାହାର ଯୁଗରୁ ନେଉଁପର ପୂଜା ପାଇ ଆସୁଥିଲେ ଐତିହ୍ୟ ପଦଧ୍ୱନୀ ଦେଇ ଷଷ୍ଠ ଶତାବ୍ଦିକାଳରେ ଶକ୍ତି ପୂଜା ଶୈବ୍ୟଧର୍ମର ତନ୍ତ୍ରୋପଚାର ଦ୍ୱାରା ବହୁ କାପାଳିକମାନେ ଯୋଗିନୀପୂଜାରେ ଚର୍ଚ୍ଚିକାଙ୍କୁ ତୁଷ୍ଟ କରିଥିଲେ । ବହୁତନ୍ତ୍ର ଗ୍ରନ୍ଥର ସୃଷ୍ଟିରେ ଏହି ଦେଶ ସମୃଦ୍ଧି ଲାଭକରିଥିଲା, ବ୍ରହ୍ମଡାମର, ଶିବଡ଼ାମର ଅଞ୍ଜନଦ୍ଧୂତି, ପାଦୁକା ସିଦ୍ଧି ଶୂନ୍ୟରେ ଉଡ୍ଡୀନ ହେବାର ତନ୍ତ୍ରକଳାଦ୍ଧି ଦ୍ୱାରା ପୀଠର ମହାତ୍ମ୍ୟ ପ୍ରସିଦ୍ଧି ଲାଭ କରିଅଛି । ଓଡ଼ିଶାର ଶକ୍ତିପୂଜା ପୀଠଗୁଡ଼ିକୁ ଯେତେ ଯେତେ ସ୍ଥାପତ୍ୟ ପ୍ରମାଣର ଦୃଷ୍ଟିହୀନ ହୁଏ, ବାଙ୍କୀ ତହିଁର ସର୍ବାଗ୍ରେ ସ୍ଥାନ ଅଧିକାର କରିଥିଲା ।

ପ୍ରଥମତଃ ବୈଦ୍ୟେଶ୍ୱରସ୍ଥ ଦୁର୍ଗାମନ୍ଦିର, ଜମଗଡ଼ା ଭୌମୀସ୍ଥାପକ ଅଗ୍ରଚଣ୍ଡୀ ଚଉଷଠି ମୁଣ୍ଡିଆ ପାଛିଲ ମା’ ମୂର୍ତ୍ତି ଏକ ସମସାମୟିକ ସର୍ଜ୍ଜନା । ଭୌମୀନୁଗର ଦଣ୍ଡୀମହାଦେବଙ୍କ ରାଜ୍ୟଶାସନର କମନୀୟ ମୂର୍ତ୍ତିଟି ଅଗ୍ରଚଣ୍ଡୀଙ୍କ ଦ୍ୱାରଦେଶରେ ଶୋଭା ପାଉଅଛି । କେଶରୀବଂଶୀୟ ରାଜାମାନଙ୍କ ଶୈବ୍ୟଶକ୍ତିର ପ୍ରତିଷ୍ଠାନୁଗତେ, ବାଙ୍କୀ ସିଂହନାଥ ମନ୍ଦିର ଉଦ୍ୟୋତ କେଶରୀଙ୍କ ଭାଇ ବଜ୍ର କେଶରୀ ମହାନଦୀ ଗର୍ଭରେ ଯେଉଁ ମନ୍ଦିର ତୋଳାଇ ଅଛନ୍ତି । ବାଙ୍କୀର ମୂର୍ଦ୍ଧାଭାଗସ୍ଥ ଅମଙ୍ଗେଇ କୁଦର ଅନନ୍ତ ବର୍ମାଦେବଙ୍କ ଶିବମନ୍ଦିର ମୁମେରୁ ଓ କୁମେରୁ ଭାବେ ବାଙ୍କୀର ମାନଦଣ୍ଡକୁ ସମୃଦ୍ଧି କରିଅଛି । ସମ୍ବଲପୁର ଇତିହାସ ପ୍ରଣେତା, ଶିବପ୍ରସାଦ ଦାଶଙ୍କ ଲିଖିତ, ମଣ୍ଡଳ ଶାସନ ଓ ପାଟକ ସମ୍ପର୍କି ବାସ୍ତ୍ୱାନୁଭୂକ୍ତ ମଧ୍ୟରୁ ସମଗ୍ର ଓଡ଼ିଶା ବହୁବିଧ ମଣ୍ଡଳ ଭାବେ ବିଭକ୍ତ ହୋଇ, ବଉଦ୍ଧା ନରସିଂହପୁର ଠାରୁ ରଡ଼ାଗଡ଼ ପର୍ଯ୍ୟନ୍ତ ଐରାବତ ମଣ୍ଡଳରୁ, ବାଙ୍କୀ ଗୁମଣ୍ଡାମଣ୍ଡଳ ଭାବେ ପ୍ରସିଦ୍ଧି ଥିଲା । ଇତିହାସର ସମୟ ସେ ସମୟରେ ରଡ଼ାଗଡ଼ ବାଙ୍କୀ ରାଜ୍ୟର ଅଧୁନା ଥିଲେ ମଧ୍ୟ, ଐତିହାସିକ ପଦ୍ମ ପରମା-ନନ୍ଦ ଆଚାର୍ଯ୍ୟ ଓ ଡଃ. ନନ୍ଦନ କୁମାର ସାହୁଙ୍କ ଓଡ଼ିଶାହିଷ୍ଟ୍ରି ମଧ୍ୟରେ ଐରାବତ ମଣ୍ଡଳଭାବେ ଲିପିବଦ୍ଧ । ଚେଦିରାଜବଂଶର କଳଚୁରି ଡାହାଳବର୍ଗ ୧୨୦୦ ଶତକରୁ ୧୪୦୦ ଶତକ ମଧ୍ୟରେ ବାଙ୍କୀ ରାଜ୍ୟରେ ପ୍ରାଧାନ୍ୟ ବିସ୍ତାର କରିଥିଲେ । ସେମାନେ ମହାରାଷ୍ଟ୍ରିୟ ବୁନ୍ଦେଲଖଣ୍ଡି ଅଞ୍ଚଳରୁ ଉର୍ଦ୍ଧ୍ୱିକ ବର୍ଗୀମାନଙ୍କ ପ୍ରାୟ ବାଙ୍କୀର ସାଧାରଣ ପ୍ରଜାମାନଙ୍କୁ ହଇରାଣ କରୁଥିଲେ । ବ୍ରହ୍ମପୁରସ୍ଥ ବୁଢ଼ୀଠାକୁରାଣୀ, ପଲ୍ଲୀଙ୍କ ତୋଟା, ସୋଲପୁର ଡାହାଳକୂଅ, ମହାପର୍ବତସ୍ଥ ଡାହାଳଆବାଗ, ଜାମୁଡ଼ିହ, ଚକାପଦାସ୍ଥ ମହାନଦୀ କୂଳେ—କୂଳେସେମାନଙ୍କ ବସିତସ୍ଥାପନ ସ୍ମୃତି, ବହୁବିଧ ପ୍ରାଚୀନ ଇଟକରଣ ଦେଖିବାକୁ ମିଳେ ।

ପାଟପୁରସ୍ଥ ସିଂହନାଥପୁର, ନନ୍ଦକୁଣ୍ଡା ଠାରୁ ପ୍ରାପ୍ତ ତମ୍ବାପଟାରେ ସିଂହଧ୍ୱଜ ରାଜପ୍ରତିଷ୍ଠା ସମ୍ବନ୍ଧୀୟ ତଥ୍ୟକୁ ପଦ୍ମଶ୍ରୀ ସତ୍ୟନାରାୟଣ ରାଜଗୁରୁ ତାଙ୍କ ଓଡ଼ିଶା ଇତିହାସରେ ବର୍ଣ୍ଣନାକରିଅଛନ୍ତି । ଦଶମ ଶତାବ୍ଦୀର ପ୍ରାରମ୍ଭିକ ସମୟରେ ବିହାର ଧଳଭୂମିରୁ ଭୌମ ରାଜକୁମାର ବୀର ବଳଭଦ୍ର ଧଳସିଂହ ତ୍ରିକଳିଙ୍ଗା ଦେବଙ୍କ ବରରେ, ତଥା ଗଜପତିଙ୍କ ସାନୁଗ୍ରହିତ ହୋଇ ଏହି ରାଜ୍ୟ "ଅମେଇଁ ଠାରୁ କମେଇଁ" ପର୍ଯ୍ୟନ୍ତ ଭୋଗ ଦଖଲ କରିଥିଲେ । ବାଙ୍କୀରେ ଧଳବଂଶର ପ୍ରଥମ ପ୍ରତିଷ୍ଠାତା ବୀର ବଳଭଦ୍ରଙ୍କ ଉପସ୍ଥାପନାରେ, ଏଠାକାର

...ଧାବାସୀ ସନେଇ ଭାଇ ପୁଅ ନାମକ ଏକ ଅନୁନ୍ନତ ଗୋଷ୍ଠିଙ୍କୁ ସେ ନଜର ଦେଇଥିବା ତୁଳନାରେ ବାରଦାଣ୍ଡା ବାଡ଼ି ବାଙ୍କୀ ରାଜ୍ୟର ରାଜା ହୋଇଥିଲେ । ପ୍ରଥମ ଇତିହାସ ପଢ଼ିଲ ଅଛୁ :—

ଅମେଇଁ ଠାରୁ କଟେଇଁ ଲୋ
ବାର ବାଟେ ବାଙ୍କୀ ଭୂଇଁ,
ବଡେ ମାତ ଚର୍ଚ୍ଚିକାଇ ଲୋ ॥

ଅଘୋର ନାରାୟଣଙ୍କ ପ୍ରଣୀତ । କୁମୁଟଙ୍ଗାଗିରି, କୁମ୍ଭୃଷିଙ୍କ ଆଶ୍ରମ ଇତିହାସ, ୨ୟ ପୃଷ୍ଠା, କାଳୀକଳ୍ପ ଗ୍ରନ୍ଥର ଅଷ୍ଟମ ଅଧ୍ୟାୟ—

ପୂର୍ବରେ ରହିବେ ଚଣ୍ଡୀ ପଶ୍ଚିମରେ ଶିବ
ଦକ୍ଷିଣେ କୁଣ୍ଡଳଙ୍କଠି ଶବୋଭୂଳା ଥିବ ॥
ଗାଁଟରେ ରହିବେ ଦେବୀ ନାମ ଚର୍ଚ୍ଚିକାଇ
ପଶୁରାମ ଆପେ ଯିବେ ରଚକରେ ରହି ॥
ମାତାନାମେ ଶରମୂନେ ନନ୍ଦୀଧାର ଆଙ୍କି
ଚର୍ଚ୍ଚିକା ରଖିବେ ଆପି ନାମଦେବ ବାଙ୍କୀ ॥

ପଣ୍ଡିତ ନୀଳକଣ୍ଠ ରଥଙ୍କ ପ୍ରଣୀତ ମନୋଜ୍ଞକଳିକା, ସ. ବନ୍ଧ୍ରିଳ ଗୀତାରେଖ ତରଙ୍ଗିଣୀ, ଗ୍ରନ୍ଥ ସୂଚନାରେ—

ସ୍ଥିତ ସିଦ୍ଧ ରୂପତପୀ ଯମଦଗ୍ନି ଫଳେ
ସୁବଖ୍ୟାତ ରତକ ଶିଖର ଧର୍ମତଳେ ॥
ସଦା କଳରବରେ ତଟିମା କୁଳେଶ୍ୱରୀ
ଶୂର ବୀର ଗୀତଗାଏ ରେଣୁକା ସୁନ୍ଦରୀ ॥

ଟିଗିରିଆ ନିବାସୀ ଜୟକୃଷ୍ଣ ମିଶ୍ରଙ୍କ ଚର୍ଚ୍ଚିକା କାବ୍ୟ, ସିଂହନାଥ କାବ୍ୟ, ଅଙ୍ଗୁଳପା କାବ୍ୟ, ବାଙ୍କୀ ଗୌରବଗାଥାର ପରିଚୟ ପାଠକମାନଙ୍କୁ ଅବିଦିତ ନାହିଁ । ମତପ୍ରଣୀତ ବାଙ୍କୀ କାବ୍ୟରେ—

ଛିନ୍ନମସ୍ତାସ୍ୱରୂପା ଚର୍ଚ୍ଚିକା ସୁନ୍ଦରୀ
ଧୂର୍ଜଟୀ ବାନ୍ଧବୀ ଗୌରୀ ପୁରନ୍ଦରୀ ॥
ତୋ ପୂଣ୍ୟ ପାଦଙ୍କ ତଳେ ମୁଁ ନମୁଛି
ଧୀଶକ୍ତି ପ୍ରଦାନ ଆନେ ନାହିଁ କରୁଛି ॥
ଭୃଗୁ, ଚ୍ୟବନଙ୍କ କୁଳ ପ୍ରଦୀପଙ୍କୁ
ହୃଗତେ ନମଇଁ ମହର୍ଷି ଔର୍ବଙ୍କୁ ॥

ରଚକ ଆଶ୍ରମ ବୈଦିକ ବାରତା
ଶୁଣିବ ପୁରାଣ ପ୍ରବନ୍ଧର ଗାଥା ॥

× × ×

ବାଙ୍କୀଠାରେ ଆସାମର ଅରୁଣାଚଳ ପ୍ରଦେଶରେ ମଧ୍ୟ ପଶୁରାମ ପୀଠ ଓ ରଚକ ପର୍ବତ ବିଦ୍ୟମାନ ଅଛି, ସେହିକ୍ଷେତ୍ରରେ ବିଷୁବକୁ ଯାହା ଉତ୍ସବ ହେବାର ଜଣାଯାଏ ବନେଶ୍ୱରୀ ଚର୍ଚ୍ଚିକାଙ୍କର ମହାଭାରତ ଯୁଗରେ ଶାନ୍ତିପର୍ବର ବୃତ୍ତ—

ଚର୍ଚ୍ଚିକା କରାଳ ମୂର୍ତ୍ତି ଶାକମ୍ଭରୀ ଶଙ୍କିନୀ
ଖଡ୍ଗ ଖର୍ପର ଡାକେ ନାଚ କାତ୍ୟାୟନୀ ॥

ମାଳତୀ ମହୋଦୟ, ଦ୍ୱିତୀୟ ଅଧ୍ୟାୟ—

ମହାନଦୀତ ବିଖ୍ୟାତ ପୂର୍ବ ସାଗର ଗାମିନୀ
ତସ୍ମାତ୍ ପୂଣ୍ୟତମାତୋୟା ନଦୀ ଶତୋପୂନାଭଧା
ଚର୍ଚ୍ଚିକାଂତଂ ମହାବିଷ୍ଣୁ ଶକ୍ତିଂ ପରନ୍ଲୋକମ୍ ॥

ଅଚ୍ୟୁତାନନ୍ଦଙ୍କ ମହାଗୁପ୍ତ ପଦ୍ମକଳ୍ପ—ସପ୍ତମ ଅଧ୍ୟାୟ ଚର୍ଚ୍ଚିକା—

ଚନ୍ଦ୍ରାଚନ୍ଦ୍ରି ହେବୁରାମ ଏହିଠାରେ ଜାଣ
ଚର୍ଚ୍ଚିକାପୂର୍ବି ପେଟ ଯିବୁ ନେମାଳେଟି ଜାଣ ॥

ସେହିପରି ବନେଶ୍ୱରୀଙ୍କୁ ନେଇ କେତେକ ମାଳିକା ଦୃଷ୍ଟିହୁଏ ।

ଲହଲହ ଜିହ୍ୱା ଶୂଳମା ରଚଗିର ବାସିନୀ
ସମଲେଶ୍ୱରୀଙ୍କୁ ଡାକଲେ ଖଣ୍ଡାଶୂଳଲେ ନାମ ॥

× × ×

ଚର୍ଚ୍ଚିକା ମହାନ ଶକ୍ତିପୀଠ ଭାବେ ପରିଚିତ ହୁଏ କାରଣ ୧୮୭୪ ଭଗବାନ ମହିମାସ୍ୱାମୀ ୧୨ ବର୍ଷର ଭୀମଭୋଇଙ୍କୁ ଧରି ସେ ସର୍ବପ୍ରଥମେ ସତ୍ୟ ମହିମାଧର୍ମ ପ୍ରଚାର କରୁଥିଲେ, ଏହିପୀଠରୁ ପରେ ପୁରୀ, ଖଣ୍ଡଗିରି ଓ କପିଳାସଠାରେ ମହିମାସ୍ୱାମୀ ଧର୍ମପୀଠ ସଂସ୍ଥାପନ କରିଥିଲେ । ସନ୍ଥଭୀମଭୋଇଙ୍କ ପଦରେଣୁ ଦାଣ୍ଡୁଦାସ, ଅଚ୍ୟୁତାନନ୍ଦ, ଯୋଗୀ ଗୋରେଖନାଥ ତଥା ବୌଦ୍ଧ ମହାମୁନିମାନେ ଚର୍ଚ୍ଚିକା ଦେବୀଙ୍କୁ ଆରାଧନା କରି କାଳଜୟୀ ହୋଇପାରିଥିବାର ଜଣାଯାଏ ।

ବାଙ୍କୀର ଚର୍ଚ୍ଚିକାରେ ଶ୍ରେଣୀରେ ଶ୍ରୀମଳମାଧବଙ୍କ ପାହାଚ ଚଳୁଁ । ଅଠଗଡ଼ର କନ୍ଦୋଳ ଗ୍ରାମ ଚର୍ଚ୍ଚିକାଙ୍କ ପାହାଚ ଠାରୁ ଅମଙ୍ଗୋଇ କୁଦ ପର୍ଯ୍ୟନ୍ତ ବା ପ୍ରାମାଣିକ ଭାବେ ୧୭୬୫ରେ ବାଙ୍କୀ ରାଜା ଖଣ୍ଡପଡ଼ା ରାଜାଙ୍କୁ କାଳିଦାସ ନଦୀଠାରୁ ଶ୍ରୀମଳମାଧବଙ୍କ ପାହାଚ ପର୍ଯ୍ୟନ୍ତ ଦେଇ ଦେଇଥିଲେ । ବାଙ୍କୀ ୧୮୦୦ ଶତାବ୍ଦୀର ପୂର୍ବାର୍ଦ୍ଧବେଳେ, ବଡ଼ମ୍ବା ରାଜାଙ୍କ ଦେଓ୍ୱାନ ପ୍ରଭାବରେ ବାଙ୍କୀ ସିଂହାସନ ଧରିଲ, ଦଇତ କେଶରୀଙ୍କ କାଳେ ଆଜି ବଡ଼ମ୍ବାର ଅନ୍ତର୍ଭୁକ୍ତ ୧୮୦୨ ଜମପଡ଼ା ଓ ମୋଙ୍ଗ ମୁଣ୍ଡାଳୀନରେ ପୂର୍ବରୁ କନ୍ଦୋଳ ଗ୍ରାମଠୁ କନ୍ଦରପୁର, ତଥା ଅମଙ୍ଗୋଇ ଠାକୁର ଚାଲିଗଲେ ଅଠଗଡ଼ ରାଜ୍ୟକୁ । ବାଙ୍କୀ ରାଜ୍ୟର ସୈନ୍ୟମାନେ ବରଡ଼ାକିମ୍ବିଟ୍ରୁ ବିଚ୍ଛିନ୍ନ ହୋଇଥିବା ସ୍ଥାନ, ଦେବ-ପୀଠ ସ୍ଥାପନ, ଅମଙ୍ଗୋଇ କୁଦ ମଧ୍ୟ ବାଙ୍କୀ କାଳ ପ୍ରଭାବରେ ହରାଇ ବସିଅଛି ଚାରିଆଡ଼ୁ ଅଧ୍ୟୁଷିତ ପଟନାୟକ ଘର ପୁଅଙ୍କ ପ୍ରଭାବରେ ବାଙ୍କୀ ରାଜା ଶକ୍ତିଶାଳୀ ହୋଇଥିଲେ । ତାହାର ଜନଶ୍ରୁତି ପଦଟି ଥିଲ—

ସୋଳର ଛକରୁ ଷୋଳେଶ ବେକ
ଖୋରଧା ପାଇକ ରଣପୁରୁ ଠେକ
ବାଙ୍କୀ ପଟନେଇଙ୍କ ସିଦ୍ଧ ମନ୍ତ୍ରୀପଣ
ଓଡ଼ଶା ମୁଲକେ ଡ଼ାକ ।
ଜମପଡ଼ା ମଡ଼ା ସରଣ୍ଡା ଚୂଡ଼ାକୁ
ଶତ୍ରୁ ହଲାଇ ନପାରେ ବେକ ॥

ବାଙ୍କୀ ବୌଦ୍ଧଯୁଗରୁ ଉତ୍କଳ ଗଜପତି ମଦନ ମହାଦେବଙ୍କ ସମୟରେ ବ୍ରାହ୍ମଣଧର୍ମ ଓ ବୈଦିକ ବଳବତରେ ବୌଦ୍ଧାଚାର୍ଯ୍ୟ ମାନେ ହାରଯାଇ,ଦେଶର ଘୋର ଅରଣ୍ୟ ମନଦ ଅବବାହିକାର ଦୁର୍ଗମ ସ୍ଥାନମାନଙ୍କରେ ଆତ୍ମଗୋପନ କରିଥିଲେ । ଏହି ବୌଦ୍ଧାଚାର୍ଯ୍ୟମାନେ ଆପଣା ଆପଣାର ସ୍ଥିତିକୁ ଉଦ୍-ଘାଟନକରି ଏହି ଅରଣ୍ୟାନବେଷ୍ଟିତ ଅଞ୍ଚଳର ଅଠରଗୋଟି ଜନପଦକୁ ନେଇ ବାଙ୍କୀ ରାଜ୍ୟର ପ୍ରାରମ୍ଭିକ ସ୍ଥିତି ଘଟିଥିବା କିମ୍ବଦନ୍ତୀରୁ ଜଣାଯାଏ, ଅଧୁନା ରଙ୍ଗଣୀ ସବାର ବା ଶାକାହାର ବୌଦ୍ଧଗୋଷ୍ଠି ମାନେ ସେ ଯୁଗର ବଂଶଧରଗଣ ବୌଦ୍ଧଗ୍ରନ୍ଥ ଶିଉଳରେ ଅଧୁନା ମହାନଦୀ, ମନଦ୍ ଘରେ ଭଣ୍ଡାର, ବ୍ରହ୍ମଭୂଷଣଙ୍କ ପୀଠ ବ୍ରହ୍ମପୁର, କୃଷ୍ଣାଚାର୍ଯ୍ୟ ପାଦନାମଙ୍କ କାଲୁପଥର, ରଙ୍ଗଣିକୁଳ କାହ୍ନୁପାଙ୍କ ପୀଠ କାହ୍ନପୁର । ତଗିରଆସ୍ଥ ବୈଦିକ ପୀଠ ଅଧୁନା ଲୋଭ ଠାକୁରାଣୀ ଘାଟେ, କାର୍ତ୍ତିକ ପୂର୍ଣ୍ଣିମା ଦିନ ଦେଶର ଶତଶତ ଶିଶୁ ଲୁଣ୍ଠିତ ଶ୍ରମଣ ଧର୍ମ-ଦଣ୍ଡରେ ଦକ୍ଷିତ ହୋଇ ଅଙ୍କଲେକ ଚେତନାରେ ବୁଦ୍ଧନଶାଣକୁ ମୂମୂର୍ଷଭାବେ

ଆଜିବି, ସଞ୍ଜୀବିତ କରିଅଛନ୍ତି ବ୍ରାହ୍ମଣ ଧର୍ମର ଚରମ ନିଗଡ଼ ତଳେ ରୁଦ୍ଧ ହୋଇ । ମହାନଦୀ ଗର୍ଭସ୍ଥ ସାଁପୁର ଗ୍ରାମର ଚୌରାଶିଯୁ ଠାକୁରାଣୀ, ଚୌରାଶି ସିଦ୍ଧାଚାର୍ଯ୍ୟଙ୍କ ମିଳନ ପୀଠ ଠାରୁ ମହାନଦୀକୂଳସ୍ଥ ପୂର୍ବଘାଟ ନଗର, ବୌଦ୍ଧ ମହାଯାନ ନାଗାର୍ଜ୍ଜୁନ ଠାରୁ ମନ୍ତ୍ରସନ୍ଧ୍ୟାମାରଣ ଜାରଣାଦିରେ ସିଦ୍ଧି ଲାଭ କରିଥିବା ବୌଦ୍ଧାଚାର୍ଯ୍ୟଗଣ ବାଙ୍କୀମାଟିରେ ସେମାନଙ୍କ ଲୀଳାଭୂମିକୁ ସାର୍ଥକ କରିଥିବା ତଥ୍ୟରୁ ଡଃ. କରୁଣାକର କରଙ୍କ ପ୍ରଣିତ । ଆଶ୍ଚର୍ଯ୍ୟ ଚର୍ଯ୍ୟାଚୟ ଗ୍ରନ୍ଥରେ ଲେଖିଥିଲେ ମହାପର୍ବତସ୍ଥ ଖୋହଲ ବଗର ଗୁମ୍ଫାରେ ବୁଦ୍ଧଙ୍କର ଜଣେ ଶିଷ୍ୟ ନରସିଂହଙ୍କ ଆତ୍ମଗୋପନ କରିଅଛନ୍ତି ।

ବାଙ୍କୀ ବଉଦ ଚଉଖଣୀ
ଗୋପ୍ୟ ଭଜନ୍ତି ହୃଷିକେଶି ॥
ପ୍ରବେଶ ବାଙ୍କୀ ଯେ ପର୍ବତ
ମହାପର୍ବତେ କଲେ ସ୍ଥିତ ॥
ଖୋଲପୁର ଯେ ଗୁମ୍ଫାକର
ଗୋପନେ ରହି ଦିନ ହର ॥

ବାଙ୍କୀ ଠାରୁ ବଉଦ ପର୍ଯ୍ୟନ୍ତ ବୌଦ୍ଧରାଜ୍ୟର ପ୍ରାଚୀନକୀର୍ତ୍ତି ସହିତ, ବାଙ୍କୀ ସ୍ଥାପତ୍ୟ ସଂସ୍କୃତି ବୌଦ୍ଧବିହାର ଗୁଡ଼ିକ ଶୈବ୍ୟଲୀଳାରେ ଚକିତ ହୋଇଅଛି । ତାହାର ପ୍ରତ୍ୟକ୍ଷ ଦୃଷ୍ଟାନ୍ତ ରଗଡ଼ପଡ଼ାସ୍ଥ ବୁଦ୍ଧମନ୍ଦିରର ଅବହେଳିତ ଦଶା । ବଡ଼ମ୍ବା, ବାଙ୍କୀ, ଖଣ୍ଡପଡ଼ା, ନରସିଂହପୁର ଦଣ୍ଡନୃତ୍ୟର ବିଭିନ୍ନ ମୁଦ୍ରା ବଜ୍ରଯାନର ସୂକ୍ଷ୍ମସିଦ୍ଧିକୁ ଚୂର୍ଣ୍ଣ କରିଦେଇ, ଶୈବ୍ୟଧର୍ମର ରୁଦ୍ରଲୀଳାକୁ ପ୍ରତିଷ୍ଠା କରି, ବ୍ରାହ୍ମଣଧର୍ମ ଦଣ୍ଡକୁ କଷ୍ଟ କଳ୍ପିତ ଶାସନରେ ଯୋଡ଼ିଦେଇ ଲୋକଙ୍କୁ ସହଜମନ୍ତ୍ରରେ ଗ୍ରହିତ କଲେ । ବାଙ୍କୀ ରାଜବଂଶରେ ମଧୁଶ୍ରୀଚନ୍ଦନଙ୍କ ରାଣୀ ମୁକ୍ତାଦେଈଙ୍କ ପୁତ୍ର ବ୍ୟାଧିଗ୍ରସ୍ତ ଥିବାବେଳେ ସନ୍ଥ ଗୋରେଖନାଥ ତାଙ୍କ ଯୋଗସନ୍ତରେ,. ମୌଳୀ ଶ୍ରୀଚନ୍ଦନଙ୍କୁ ରୋଗମୁକ୍ତ କରାଇଥିଲେ, ଯାହାକି ପରବର୍ତ୍ତୀ ଜୀବନରେ ମୌଳୀ ମହାଯୋଦ୍ଧା ଥିଲେ ।

ଚୈତନ୍ୟଦାସଙ୍କ ହେତୁ ଉଦୟ ଭାଗବତ ତଥ୍ୟରେ ଏହାର ସୂଚନା, ୧୩୦୦ ଶତକର ପ୍ରଥମ ପାଦରେ କଣ୍ଟାଗଡ଼ା, ମେରୁ, ଝାମ୍ପୁଁ, ଦଣ୍ଡଗଡ଼ା ବୌଦ୍ଧିକବିଧିରେ ପଣାପାସା, ବିଷୁବ ପର୍ବ ରାଣୀ ମୁକ୍ତାଦେଈ ଝାମୁଯାତ୍ରାର ବିଧାନକୁ ଆଜିସୁଦ୍ଧା ବାଙ୍କୀ ପ୍ରସିଦ୍ଧି ଲାଭ କରିଅଛି । ୧୭୬୮ରେ ବାଙ୍କୀ ପୂର୍ବ ପାଟପୁରସ୍ଥ ଗୋବିନ୍ଦ ସାମନ୍ତରାୟଙ୍କ ପ୍ରଣିତ, "ମୂଷା ସଙ୍ଗ୍ରାମ" ଗ୍ରନ୍ଥରେ

ବାଙ୍କୀର ନାମକରଣ ନେଇ ବଙ୍କଦୁର୍ଗ, ସ୍ୱଦ୍ଧତଭୂମାନ ଉର୍ବୀର ଉବରଉମ ବୃତ୍ତୁର୍ଥ୍ୟ ଖଣ୍ଡପଡ଼ା ଖଣ୍ଡପତନ ନୟାଗଡ଼, ନବଦୁର୍ଗ ଆଠଗଡ଼, ଅଷ୍ଟଦୁର୍ଗ ଭଳି ଗଣ୍ଡପୁସି ବାଙ୍କୀକୁ ବଙ୍କଦୁର୍ଗ ଭାବେ ଅଲଂକରଣ କରିବାରେ ଅନେକ କବି ସିଦ୍ଧିହସ୍ତ ଥିଲେ । ୧୮୧୭ ଗୋବିନ୍ଦଙ୍କ ନାତି କବି କମଳଲୋଚନ ଖଡ୍ଗ-ରାୟଙ୍କ କାବ୍ୟକୃତିରେ ମଧ୍ୟ ବଙ୍କଦୁର୍ଗର ବର୍ଣ୍ଣନା ମଞ୍ଜୁଳତର ଭାବେ ପ୍ରସିଦ୍ଧି ଲଭ କରିଅଛି । ଶୁକଦେବଙ୍କ ନାତି, ରାଜକବି ପଦ୍ମନାଭ ଶ୍ରୀଚନ୍ଦନଙ୍କ, ଶଶୀରେଖା କାବ୍ୟ ଭଣିତା,

ନରେଶ ଅବତଂଶ ବନ୍ଦିତ ଗୁଣ
ସୁନ୍ଦର ବରବର ଦାନଭୂଷଣ ॥
ବଙ୍କଦୁର୍ଗ ନଗର ମଧ୍ୟମଣ୍ଡନ
ଭଣିଲେ ପଦ୍ମନାଭ ଶିରଚନ୍ଦନ ॥

ରାଜକବି, ବ୍ରଜବନ୍ଧୁଦାସଙ୍କ ଚୌପଦୀ କୁମୁଦରେ ବାଙ୍କୀର ଭଣିତକୃତି ଶିର୍ଷକ,—

ବଙ୍କଦୁର୍ଗ ଉର୍ବିଶିରୀ
ନୃପତି ବ୍ରଜବନ୍ଧୁଦାସ ॥

ରାଜା ପିତାମ୍ବର ଶ୍ରୀଚନ୍ଦନଙ୍କ ରଚନାରେ ମହାମାମଣିଙ୍କ ସ୍ତୁତିଭଣିତରେ କବିଙ୍କ ଲକ୍ଷ୍ୟ ପଦ୍ୟ ବିଶେଷର—

ପଣ୍ଡିତ ହୃଦନନ୍ଦନ ପିତାମ୍ବର ଶ୍ରୀଚନ୍ଦନ
ସୁଦିବ ଧ୍ୟାନନ୍ତି
ବଙ୍କଦୁର୍ଗ ମୁଖ ଦୁର୍ଗ ଶ୍ରୀମଣି ପଦ ସ୍ପର୍ଶ
ଦିଅ ମୁକତି ॥

ବାଙ୍କୀ ରାଜ୍ୟର ରାଜବଂଶ ପ୍ରତିଷ୍ଠାତା ୨୭ ପୁରୁଷ ଶ୍ରୀଚନ୍ଦନ ମଧ୍ୟରୁ ବଳଭଦ୍ର ଧଳସିଂହଙ୍କ ୧୧ ପୁରୁଷ ମଧ୍ୟରେ, ଉତ୍କଳ ରାଜା ଚତୁର୍ଥ ଭାନୁଦେବ-ଙ୍କର ଶାସନ ସମୟରେ ଶ୍ରୀଚନ୍ଦନ ମହାପାତ୍ର ବେହେରା ଖଣ୍ଡାୟତ ଉପାଧିଦ୍ୱାରା ବାଙ୍କୀ ଗୌରବାନ୍ୱିତ ଥିଲା । ୧୭୧୭ ଖ୍ରୀଷ୍ଟାବ୍ଦରେ, ଖୋର୍ଦ୍ଧା ଗଜପତି ଗୋପିନାଥ ଦେବଙ୍କ ସହ ବାଙ୍କୀ ଧନୁର୍ଜୟ ଶ୍ରୀଚନ୍ଦନଙ୍କ ଯୁଦ୍ଧରେ ବାଙ୍କୀ ରାଜା ନିହତ ହେଲେ । ରାଣୀ ଶୁକଦେଈ ମାଆ ଚର୍ଚ୍ଚିକା ଦେବୀଙ୍କ ବରରେ ଦ୍ୱିତୀୟବାର ଯୁଦ୍ଧରେ ଗୋପିନାଥଦେବଙ୍କୁ ସମ୍ମୁଖ ଯୁଦ୍ଧରେ ପରାସ୍ତ କରିଥିଲେ ୧୮୦୨ ଫାଲ୍ଗୁନ ମାସ ଦୋଳପୂର୍ଣ୍ଣିମା ଦିନ, ଦିବ୍ୟସିଂହଦେବ ଓ ବ୍ରଜବନ୍ଧୁଦାସ

ଶ୍ରୀଚନ୍ଦନଙ୍କ ସହ,ଯୁଦ୍ଧଘଟି ବାଙ୍କୀ ରାଜାଙ୍କଭାଇ ଜଗନ୍ନାଥ ଭ୍ରମରବରଶ୍ରେଷ୍ଠରାୟୁ ନିହତ ହେଲେ, ପରେ ମରହଟ୍ଟା ସୁବେଦାର ବାଲାଜୀ କୁଞ୍ଜରଙ୍କ ଦ୍ୱାରା ଗଜପତି ପରାସ୍ତ, ତାଙ୍କ ପରବର୍ତ୍ତୀ ବଷ, ମିଲ୍‌ମିଲ୍ , କର୍ଣ୍ଣେଲ୍ , ଫ୍ଲେଚର୍ ଇଂରେଜ ବଣିକମାନେ ଦକ୍ଷିଣପଟ୍ଟ , ଖଣ୍ଡପଡ଼ା ରାମଚନ୍ଦ୍ର ମର୍ଦ୍ଦରାଜଙ୍କ ଦ୍ୱାରା ବାଙ୍କୀ ନରରାଜ ଭୂଜମିଷ୍ଟକୁ ଆସି, ବ୍ରଜବିହାରୀ ଶ୍ରୀଚନ୍ଦନଙ୍କ ସହାୟ ନେଉଥିଲେ । ବାଙ୍କୀ ରାଜା ଇଂରେଜମାନଙ୍କୁ ସହାୟକ ହୋଇ ରାମଚନ୍ଦ୍ର ମର୍ଦ୍ଦରାଜ ଓ ଜୟିରାଜଗୁରୁଙ୍କର ଦ୍ୱନ୍ଦ୍ୱ ସୁଯୋଗରେ ତୃତୀୟ ପକ୍ଷର ଲାଭ ସଦୃଶ ଇଂରେଜମାନେ ଖୋରଧା ଅଧିକାର କଲେ । ବାଙ୍କୀର ଖୋରଧା ସହିତ ପ୍ରଥମ ଯୁଦ୍ଧ, ୧୫୩୭ ମଧ୍ୟରେ ଘଟିଥିଲେ, ମଧୁ ଶ୍ରୀଚନ୍ଦନଙ୍କୁ ଗଡ୍ଡାଟେ ହନ ହତ୍ୟା କରାଯାଇଥିଲା ଓଡ଼ିଶା ମହାରାଜାଙ୍କ ଚକ୍ରାନ୍ତରେ, ପରେ ତାଙ୍କ ପୁତ୍ର ମୌଳୀସିଂହ, ଖୋରଧାର ଆଭ୍ୟନ୍ତରଣରେ ତିନିଦିନ ପର୍ଯ୍ୟନ୍ତ ବିପ୍ଳବ କରି ଆପଣା ରାଜକୁ ଫେରି ଯାଇଥିଲେ । ୧୮୨୫, ବାଙ୍କୀ ତିଗିରିଆ ଯୁଦ୍ଧରେ ରାଜା ଜଗନ୍ନାଥ ଶ୍ରୀଚନ୍ଦନ, ଧନୁର୍ଦ୍ଧର ଚମ୍ପତିସିଂହଙ୍କ ସହ ଇତିହାସର ଶେଷ ଯୁଦ୍ଧଥିଲା । ବାଙ୍କୀର ଐତିହାସିକ ଗ୍ରାମ ଚାଟପୁର, ପଦ୍ମନାଭପୁର ଶାସନ, ୧୮୯୮ରେ ବିପ୍ଳବୀ ବୀର ପଣ୍ଡିତ ଗୋବିନ୍ଦ ରଥଙ୍କ ଜନ୍ମ ତଥା ବୈଦ୍ୟେଶ୍ୱରସ୍ଥ ବ୍ରଜବିହାରୀପୁର ଶାସନ ଭୂମିଷ୍ଠ ପଣ୍ଡିତ ଜ୍ଞାନମଣି ବିଦ୍ୟାରତ୍ନ ଏଦୁହେଁ ଓଡ଼ିଶା ଇତିହାସର ଦୁଇଟି ସ୍ମରଣୀୟ । ନ୍ୟାଚମଣ୍ଡ ଓ ଦେଶ ସୀମାନ୍ତର କର୍ଣ୍ଣଧାର ଭାବେ ବନ୍ଦନୀୟ ।

ଐତିହାସିକ ଗ୍ରାମ ସୁବର୍ଣ୍ଣପୁର ରାଧାନାଥରାୟଙ୍କ ନନ୍ଦୀକେଶ୍ୱରୀ କାବ୍ୟ ସୁବର୍ଣ୍ଣକେଶରୀଙ୍କର ବନପ୍ରାନ୍ତିକ, ସୁବର୍ଣ୍ଣକେତକୀ ମହାଦେବଙ୍କ ସ୍ଥାପନାହିଁ ପବିତ୍ରତର ଭାବେ ପ୍ରସିଦ୍ଧି ଲାଭ ହୋଇଅଛି । ଓଡ଼ିଶା ରାଜାଙ୍କ ହସ୍ତମୁଦ୍ର ମାହାଲର ଆଦାୟକୃତ୍ତିତ୍ତ୍ୱ ବାକ ଶୁଳ୍କବିଧିରୁ ଏହା ବାଙ୍କୀଭାବେ ପରିଚୟ ସୃଷ୍ଟିହ ହୋଇଥାଇପାରେ । ୧୭୬୬, ମେ ମାସ, ୧୨ ତାରିଖ ଟମାସମଟ ସାହେବ ନୌବାଣିଜ୍ୟ ନେଇ ସମ୍ବଲପୁର ଗଲାବେଳେ, ସମୃଦ୍ଧିତର କଣା-ବିକା ହେଣ୍ଡୁସ୍ଥଳକୁ ବ୍ୟାଙ୍କିଙ୍ଗରୁ ବାଙ୍କୀର ନାମକରଣ ହୋଇଥିବା ଅନୁମାନ କରାଯାଏ । ୧୭୯୦ରେ ଲେକ ସାହେବ ମଧ୍ୟ ରାଉତରାପୁର, ଲଣ୍ଡେଇଲେ କନ୍ଦରପୁର, ଓସ୍ତିଆ, ସୁବର୍ଣ୍ଣପୁର ପାରହୋଇ ଶିମିଳପୁର ଠାରୁ 'ଚର୍ଚ୍ଚିକା' ଏକକୋଶ ଦୂରରେ ବାଙ୍କୀ ରାଜଧାନୀ ବାଙ୍କୀଗଡ଼କୁ ସେ ଯାଇଥିବା କଥା ତାଙ୍କ ଡାଏରୀ ମଧ୍ୟରେ ଲିଖିତ । ବଣିକ ବ୍ରୁଟିନ ସାହେବ ବୈଦ୍ୟେଶ୍ୱର ଗ୍ରାମତ

ପ୍ରାଧାନ୍ୟ ଦେଇ ଲେଖିଛନ୍ତି । ଏହା ଏକ ଶ୍ରେଷ୍ଠ ସହରଟିଏ । ଏହି ବଦେଶି ବଣିକମାନେ ବହୁ କମନୀୟ ମୂର୍ତ୍ତି, ସିଂହନାଥ ପୀଠରୁ ତଥା ଅମଙ୍ଗେଇ କୁଦସ୍ଥ ଶୈବ୍ୟପୀଠର ସ୍ୱର୍ଣ୍ଣଖଣ୍ଡ ଓ ବହୁବଧ ଲୋଭନୀୟ ମୂର୍ତ୍ତି ଅପହରଣ କରିଥିଲେ । ବାଙ୍କୀ ପୂର୍ବ ପାଥପୁରସ୍ଥ ପାହାଡ଼ ଗୁମ୍ଫାରେ, ଓଡ଼ିଶାର ଗଜପତି ଦ୍ୱିତୀୟ ରାମଚନ୍ଦ୍ରଦେବ, ତକୀଖାଁଙ୍କ ଅତ୍ୟାଚାରରୁ ବଚିତ ହୋଇ, ସେଠାରେ ବିଶ୍ରାମ କରିଥିଲେ । ଗୁମ୍ଫାର ମୂର୍ତ୍ତ ଶିଳ୍ପକଳା ଆଜ ଶ୍ରୀହୀନ ହୋଇ ପଡ଼ିଅଛି । ଓଡ଼ିଶା ଇତିହାସର ଦେଶପ୍ରାଣ ଗଜପତି ଏହି ରାମଚନ୍ଦ୍ରଦେବ ପଠାଣ ଜୋମା ମୁର୍ଶିଦ-କୁଲିଖାଁଙ୍କର ଝିଅଙ୍କୁ ଧରି ନରସିଂହପୁର ରାଜ୍ୟ ଗଲାବେଳେ ସୁନାଦେଈ ପାହାଡ଼ ଆତିଥ୍ୟ ଭବନରେ, ବାଙ୍କୀ ରାଜା ସୁସମ୍ମାନ ସହ ମହାରାଜାଙ୍କୁ ସୁନାଥାଳିରେ ଅନ୍ନ ପରଶିଥିଲେ । ପରେ ବୈଦ୍ୟେଶ୍ୱର ଘାଟରେ ମହାରାଜା ପାରିହୋଇ ନରସିଂହପୁର ଯାଇଥିଲେ । ବ୍ରହ୍ମପୁରସ୍ଥ ମୁକ୍ତେଶ୍ୱର ମନ୍ଦିର ନାଟ ମନ୍ଦିରର ଶିଳ୍ପକଳା ୧୭୦୦ ଶତକରୁ ଅଦ୍ୟାବଧି ସୂକ୍ଷ୍ମ ପ୍ରାଚୀନ କଳା ପଟଚିତ୍ରର ଯେଉଁ ଛବି ସବୁ ଜୀବନ୍ତ ମୂର୍ତ୍ତିଧାରଣ ସଦୃଶ ବାଙ୍କୀର ଗୌରବ ଗାଥାର ପରିଚୟ ଦିଏ । ଅଜନ୍ତା, ଏଲୋରାର କଳାଚିତ୍ର ଠାରୁ ଏହା ମଧ୍ୟ କମ୍ ନୁହେଁ । ୧୬୩୫ରେ ଗମେଇ ଧଳସିଂହଙ୍କ ଠାରୁ ତିନିଗୋଟି ସନ୍ତାନ ଭୂମିଷ୍ଠ ହୋଇ, ବଡ଼ଭାଇ ପାର୍ଥଶ୍ରୀଚନ୍ଦନ ବାଙ୍କୀରେ ରାଜପଣ କଲେ । ମଧ୍ୟମ-ପୁତ୍ର ନରସିଂହ ସାମନ୍ତରାୟ, ଡମପଡ଼ା ଜମିଦାରୀର ପ୍ରଥମ ରାଜା, ତଥା ସରଣ୍ଡାରେ ସବା କନିଷ୍ଠପୁତ୍ର ରାଜା କୃଷ୍ଣଚନ୍ଦ୍ର ଦେବ ନରେନ୍ଦ୍ର ରାଜା ହେବାର ତଥ୍ୟ ପଣ୍ଡିତ ନୀଳକଣ୍ଠ ରଥଶର୍ମାଙ୍କ ବାଙ୍କୀ ଇତିହାସରୁ ଜଣାଯାଏ ।

ସ୍ୱରୂପା ଅଶୁଂପାର ପ୍ରାକୃତିକ ପ୍ରାଚୁର୍ଯ୍ୟ ବଡଭାଇରରେ ସରଣ୍ଡା ପାହାଡ଼ ଭାଇବୋହୁ କୂଅ ଏବେ ମଧ୍ୟ ଅଛି । ବାଙ୍କୀ ଡମପଡ଼ା ମୂଲକରୁ ତାଳବସ୍ତ ଗ୍ରାମ ପର୍ଯ୍ୟନ୍ତ ବନପର୍ବତ ଦକ୍ଷିଣଭାଗରୁ ଉତ୍ତର ପର୍ଶ୍ଚିମାଞ୍ଚଳ ରିନେପାର ପ୍ରଚୁର ଫସଲ ଉତ୍ପାଦକ ନେଇ ଗୋଟିଏ ପ୍ରଚୁଳା ପଦ୍ୟଅଛି—

ଡମପଡ଼ା ରାଜା ଥାଇ ବୋଇଲେ, ରିଣ, ବଣ, ଛଣ
ବାଙ୍କୀ ରାଜା କହିବସିଲେ ମୋ ତୁଡ଼ୁଆ ବାଇଗଣ ॥

ବାଙ୍କୀର ଆଖୁ ଗୁଡ ପ୍ରସିଦ୍ଧି, ରଗଡ଼, କଳାପଥର, ତୁଳସୀପୁର ହସ୍ତତନ୍ତ ଲୁଗାସବୁ ଓଡ଼ିଶାରେ ପ୍ରସିଦ୍ଧି ଲାଭ କରିଥିଲେହେଁ, ବାଙ୍କୀ ଏକ ବୀରଭୂମି ପାଇକଆଖଡ଼ାର ରଙ୍ଗମଞ୍ଚ, ବାଁରଗଡ଼ ଠାରୁ ରତାଗଡ଼ ଦଳବେହେରା

ଖିଣ୍ଡିଆ ଦଳବେହେରା, ନରସିଂହଗଡ଼ ଠାରୁ ବାଲିପାହାଡ଼, ଅନୁଆଣ୍ଡା, ପର୍ଶୁରାମପୁର, ପୁରୁଷୋତ୍ତମଗଡ଼ରୁ ବାହାଁଣପୁଷ୍ଟଗଡ଼ ମଧ୍ୟରେ ହରିରାଜପୁର ବୀରସିଂହ ମାନଙ୍କ ପ୍ରସିଦ୍ଧ ଯୋଦ୍ଧାଗାଥାରୁ କୁମୁସର ନରଣଗଡ଼, ନୂଆଗାଁ, ଖାଇକବଳ ଅମିତଶକ୍ତି ସହିତରେ ବାଙ୍କୀ ରାଜା ତାଙ୍କ ରାଜସ୍ୱ ସିଂହକେତନ ବହନ କରିଥିଲେ, ହୁଏତ ସିଂହବାହିନୀ ଚର୍ଚ୍ଚିକାଦେବୀଙ୍କୁ ପୃଷ୍ଠଭୂମିରେ ରଖି ବାଙ୍କୀ ରାଜା ଏ ଦେଶସ୍ମୃତିକୁ ବଜାଏ ରଖିଥିଲେ ।

ପଟିଆ, କେନ୍ଦୁଝର, ମୟୂର, ମୟୂରପତାକା, ଖଣ୍ଡପଡ଼ା ନୟାଗଡ଼ ତାଳଚେର ବାଘମୁଣ୍ଡର ପତାକା, ମାଳଶିରି, କଲସଫୁଲ, ଆଠମଲ୍ଲିକ କଦମ୍ବଫୁଲରୁ ଅନୁଗୁଳ କଟାରି, ନରସିଂହପୁର, ଖଣ୍ଡା ପତାକା, ତିଗିରିଆ, ପଞ୍ଚଶସ୍ୟ ହିନ୍ଦୋଳ ବର୍ଚ୍ଛା ପାଲଲହଡ଼ା, କଳାହାଣ୍ଡି ସର୍ପାଙ୍କିତ ପତାକା, ଗଜପତିଙ୍କର ହସ୍ତି ସଙ୍କେତରୁ କନିକା ଭୁଜଙ୍ଗର ଖଣ୍ଡା ପତାକା, ଢେଙ୍କାନାଳ ମୀନକେତନର ଛବି ଥିବାସ୍ଥଳେ, ବାଙ୍କୀର ସିଂହ ପତାକାର ଦୃଷ୍ଟାନ୍ତ ପଣ୍ଡିତ ଚନ୍ଦ୍ରଶେଖର ମିଶ୍ରଙ୍କ 'ସର ସୁନ୍ଦରୀ' କାବ୍ୟରେ ମୃଗେନ୍ଦ୍ର ଲାଞ୍ଛନ କଥା ସେ ଲେଖିଅଛନ୍ତି । ବୀରମଣ୍ଡଳ ମାନଙ୍କର ପୂର୍ବ ଛବଟନା ମଧ୍ୟ ଅଳିଭ ରେଖା—

ଅତେବେ ବେଦପୁର
ଅଗାଧୁଆ ପାଟପୁର ଗୋପାଳପୁର
କାଣ୍ଡଖଣ୍ଡା ନାହିଁ ହରିରାଜପୁର
ଚର୍ଚ୍ଚିକା କାଳରାତ୍ରୀ
କେବେଁ ନୁଆଁନ୍ତି ତାଙ୍କ କନ୍ଧ ॥

ବୈଦିକ ଯୁଗରୁ ବୌଦ୍ଧିକ ଯୁଗର ଅନ୍ତିମାନ୍ତ ପରେ ବଙ୍କେଶ୍ୱରଙ୍କ ନାମାନୁସାରେ ଏହି ବାଙ୍କୀ ରାଜ୍ୟ ବଙ୍କଦେଶ ନାମରେଖ୍ୟାତ ହୋଇ ଆସୁଅଛି, ତଥା କପିଳ ସଂହିତାରେ ସୁକାନ୍ତ ମହର୍ଷିଙ୍କ ତପ ପ୍ରଭାବରେ ଗଙ୍ଗା ଓଡ଼ିଶାରେ ମହାନଦୀ ନାମ ଧାରଣ କରି ବର୍ତ୍ତମାନ ରାଯ଼ପୁର ଜିଲ୍ଲାର ସାହବା ଗ୍ରାମରୁ ମହାନଦୀ ଉତ୍ପତ୍ତି ଲଭି ସନ୍ତୁଧାରରେ ରଙ୍କବନଗରକୁ ବହି ଆସିଅଛି । ସୁକାନ୍ତ ମହର୍ଷି ସେହିଠାରେ ଗୌରୀ ନାରାୟଣ ବିଷ୍ଣୁଙ୍କୁ ପ୍ରାର୍ଥନା କରି ଗଙ୍ଗାଙ୍କୁ ଉତ୍କଳରେ ଆଣିବା ଭଗିରଥ ପ୍ରଚେଷ୍ଟା ବହନ କରିଥିଲେହେଁ, ଲଳନଗେନ୍ଦ୍ର କୁମାରସ୍ୱାମୀଙ୍କ ବିବିଧ ସାର ସଂଗ୍ରହ ଗ୍ରନ୍ଥରେ, ଦ୍ରାବିଡ଼ ଯୁଗରେ ମହାନଦୀର ନାମ 'ଗାଉଲ୍' ଥିବାବେଳେ, ପଣ୍ଡିତ ବିନ୍ଦୁପାଣ୍ଡ କରଙ୍କ, ବୌଦ୍ଧଯୁଗର

ଇତିହାସରେ, ସିଉକି, ନାମକ ବୌଦ୍ଧଗ୍ରନ୍ଥରେ ମହାନଦୀର ନାମ 'ମନଦ୍' ଥିବାର ଜଣାଯାଉଅଛି । ଦେବଗଡ଼ର ରାଜା ସାର୍ ବାସୁଦେବ ସୁଡ଼ଲଦେବଙ୍କ ଚନ୍ଦ୍ରୋପୂଳା, କାବ୍ୟ ମହାନଦୀର କାବ୍ୟ ସଂସ୍କୃତିର ଐତିହତାର ଉଜ୍ଜଳ ଦେବୀ ବଜ୍ରେଶ୍ୱରୀଙ୍କର ଅନନ୍ତକାଳ ସ୍ତୁତିଗାନ କରି ଆସିଅଛି, ତାହାର ଉପକଣ୍ଠରେ ବାଙ୍କୀ ରାଜ୍ୟର ସ୍ଥିତି, ବଜ୍ରେଶ୍ୱରୀ ନାମରେ ପୂଜାର୍ଚ୍ଚ୍ୟତା, ମାତୃଶକ୍ତିର ଅନ୍ତର୍ନିହିତ ଭକ୍ତି ବିଶ୍ୱାସକୁ ସମ୍ବଳକରି ଯେକେହି ଐତିହ୍ୟ ବିଧାନ, ବାଙ୍କୀର ପ୍ରତ୍ନତତ୍ତ୍ୱ ଗବେଷଣା କରନ୍ତୁନା କାହିଁକି, ରାଧାନାଥଙ୍କ ଚନ୍ଦ୍ରଭାଗା କାବ୍ୟ ଦର୍ପଣ ଦେଖିବାକୁ ହେବ—

ନାବିକ ଅର୍ଚ୍ଚିତ ଚର୍ଚ୍ଚିକା ଦେବୀ ବାଙ୍କୀ ଈଶ୍ୱରୀ  
ମହାନଦୀ କୂଳେ ଯାହାଙ୍କ ଅଧିଷ୍ଠାନ ଶେଖର ॥  
ସରଣୀ ଦର୍ପଣ ଅଶୁଂପା ଶତଦଳ ପଦ୍ମରେ  
ମଣ୍ଡିତ ବଦନ ମଣ୍ଡଳ ସେ ଯେ ସଦାସୁହାଗେ ॥

ବାଙ୍କୀମାଟିର ଧର୍ମ ସଂସ୍କୃତି ଚର୍ଚ୍ଚିକା, ଐତିହ ସଂସ୍କୃତି ରାଣୀ ଶୁକଦେଈ ଓଡ଼ିଆ ଭାଷା ସଂସ୍କୃତିର ପରମରକ୍ଷକ ଜାତିର କର୍ଣ୍ଣଧାର ପଣ୍ଡିତ ଗୋବିନ୍ଦ ରଥ, ସମଗ୍ର ନବଉତ୍କଳର ଉତ୍ତୁଙ୍ଗ ହିମାଚଳ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ, ତଥା କବିଚନ୍ଦ୍ର କାଳଚରଣଙ୍କୁ ନେଇ ବାଙ୍କୀ ବିଶ୍ୱବ୍ୟାପକ ଗୌରବ ସୌରଭର ଅଧିକାରୀ ହେବା ଶ୍ରୀ ଶ୍ରୀଜଗନ୍ନାଥଙ୍କର ପରମ ଆଶୀର୍ବାଦ ॥

✲ ସମାପ୍ତ ✲





# ଇତିହାସର ସହାୟକ ଗ୍ରନ୍ଥସୂଚୀ


୧। ନବ ସାହିତ୍ୟ — ପଣ୍ଡିତ ନୀଳକଣ୍ଠ ରଥ

୨। ଉତ୍କଳ ଇତିହାସର ଏକ ଅଜ୍ଞାତ ଅଧ୍ୟାୟ — ଚକ୍ରଧର ମହାପାତ୍ର

୩। ପ୍ରାଚୀନ ଉତ୍କଳ — ଜଗବନ୍ଧୁ ସିଂହ

୪। ଓଡ଼ିଶା ରାଜାମାନଙ୍କ ଇତିହାସ — ଷ୍ଟର୍ଲିଂ ସାହେବ

୫। ଆଇନ ଆକବରୀ — ଗ୍ଲାଡ୍ ଉଇନ୍

୬। ସ୍ମିଥ୍ ସାହେବଙ୍କ ଭୂଗୋଳ — ସ୍ମିଥ୍ ସାହେବ

୭। ହଣ୍ଟର୍ ହିଷ୍ଟ୍ରି ଅଫ୍ ଓଡ଼ିଶା — ହଣ୍ଟର୍ ସାହେବ

୮। ଉତ୍କଳ ଦୀପିକା — ୧୮୭୨

୯। ଓଡ଼ିଶା ଇତିହାସ — ଡଃ. ହରେକୃଷ୍ଣ ମହତାବ

୧୦। ଖୋର୍ଦ୍ଧା ଦର୍ପଣ — ଦିଗମ୍ବର ଶ୍ରୀଚନ୍ଦନ

୧୧। ମରହଟ୍ଟନସି — ଚନ୍ଦ୍ରଶେଖର ମିଶ୍ର

୧୨। ରକ୍ତମନ୍ଦାର — କବିଚନ୍ଦ୍ର କାଳୀଚରଣ

୧୩। ଇତିହାସର କବରରେ — ଶାନ୍ତି ଦାସ

୧୪। ଅକ୍ଷମାଳା — ରାମଚନ୍ଦ୍ର ମିଶ୍ର

୧୫। କମଳାବାଗ୍‌ର ସମାଧିରେ .........

୧୬। କିଶୋର କବିତା — ମାୟାଧର ମାନସିଂହ

୧୭। ଉତ୍କଳିକା — ପଦ୍ମଶ୍ରୀ ରାଧାମୋହନ ଗଡ଼ନାୟକ

୧୮। ଇତିହାସର ପ୍ରତିଧ୍ୱନି — ଚକ୍ରଧର ମହାପାତ୍ର

୧୯। ରାଣୀ ଶୁକଦେଈ — ରମେଶ ଚନ୍ଦ୍ର ଭଞ୍ଜ

୨୦। ଆମର ଦେଶର ଅମରନାରୀ — ଡଃ. ଜଗନ୍ନାଥ ମହାନ୍ତି

୨୧। ଦୁଇ ଐତିହାସିକ ବୀର ରମଣୀ — କାର୍ତ୍ତିକ ଚନ୍ଦ୍ର ସ୍ୱାଇଁ

୨୨। ଏ. ଫରଗଟନ୍ ଗୃପ୍‌ଟର ହିଷ୍ଟ୍ରି ଅଫ୍ ଓଡ଼ିଶା — ପି.କେ. ପଟ୍ଟନାୟକ

୨୩। ବୀର ରମଣୀ — ସରଳା ଦେବୀ

| | | |
|---|---|---|
| ୨୪ । | ବଡ଼ମ୍ବା ଇତିହାସ ପୋଥି | ବାଲୁଙ୍କ ନାଟ୍ୟରତ୍ନ, ଅପ୍ରକାଶିତ |
| ୨୫ । | ସଚିତ୍ର ସୁଖବୋଧ ଇତିହାସ····· | |
| ୨୬ । | ଉତ୍କଳ ପ୍ରସଙ୍ଗ | ୧୯୯୩ |
| ୨୭ । | ଆମ ଇତିହାସ କଥ | ନିରଞ୍ଜନ ମହାପାତ୍ର |
| ୨୮ । | ମୁଣ୍ଡଦେଉଳ | ଲକ୍ଷ୍ମୀକାନ୍ତ ମହାପାତ୍ର |
| ୨୯ । | ଭାରତୀୟ ନାରୀ | ସାଗର ପତ୍ରିକା |
| ୩୦ । | ସରଳ ଇତିହାସ | ନବଘନ ଜେନା |
| ୩୧ । | ଇତିହାସ କଳିକା | କାଶୀନାଥ ମହାପାତ୍ର |
| ୩୨ । | ଅଭିନବ ଇତିହାସ······ | |
| ୩୩ । | ମନୋହର ଇତିହାସ କଥା | ବିଷ୍ଣୁପ୍ରିୟା ଦାସ |
| ୩୪ । | ସରଳ ଇତିହାସ | ଲୋକନାଥ ନନ୍ଦ |
| ୩୫ । | ପିଲାଙ୍କ ଇତିହାସ····· | |
| ୩୬ । | ରାଷ୍ଟ୍ରଦୀପ | ୧୯୯୪ ଅଗଷ୍ଟ ସଂଖ୍ୟା |
| ୩୭ । | ସପ୍ତରମଣୀ | ଧ୍ରୁବ ଚରଣ ପଣ୍ଡା |
| ୩୮ । | ପିଲାଙ୍କ ବଡ଼ମ୍ବା ଇତିହାସ-କଥା | ଶଶିଭୂଷଣ ରାୟ |
| ୩୯ । | ଲୋକଗଳ୍ପ ସଞ୍ଚୟନ | ଲୋକରତ୍ନ କୁଞ୍ଜବିହାରୀ ଦାଶ |
| ୪୦ । | ବହ୍ନିବଣୀ | ଧଳଭୂମି ରାଜକନ୍ୟା ପ୍ରଭାବତୀ ରାଣୀ ଶୁକଦେଈ |
| ୪୧ । | ନାରୀ ଦର୍ପଣ | ପଣ୍ଡିତ ମୃତ୍ୟୁଞ୍ଜୟ ରଥ |
| ୪୨ । | ରାଣୀ ମୁକ୍ତାଦେଈ ଓ ଶୁକଦେଈ | ଜଗବନ୍ଧୁ ସାମନ୍ତର |

# ପ୍ରାଚୀନ ବାଙ୍କୀର ସହାୟକ ଗ୍ରନ୍ଥସୂଚୀ


| | | |
|---|---|---|
| ୧ । | ଚର୍ଚ୍ଚିକା ମହାତ୍ମା | ଜଗବନ୍ଧୁ ସାମନ୍ତରା |
| ୨ । | ଚର୍ଚ୍ଚିକା ମହାତ୍ମା | ନବକିଶୋର ମହାରଣା |
| ୩ । | ଚରିତ ଚିନ୍ତାମଣି | ପଣ୍ଡିତ ନୀଳକଣ୍ଠ ରଥ |
| ୪ । | ବାଙ୍କୀ ଇତିହାସ········· | |
| ୫ । | ଓଡ଼ିଶା ଇତିହାସ | ପଦ୍ମଶ୍ରୀ ସତ୍ୟନାରାୟଣ ରାଜଗୁରୁ |
| ୬ । | ଓଡ଼ିଶା ଇତିହାସ | ଡଃ. ନବୀନ କୁମାର ସାହୁ |
| ୭ । | ବାଙ୍କୀର ପ୍ରତ୍ନତତ୍ତ୍ୱ | ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ |
| ୮ । | ସ୍କନ୍ଦ ପୁରାଣ········· | |
| ୯ । | ବୌଦ୍ଧଯୁଗର ଇତିହାସ | ପଣ୍ଡିତ ବିରୂପାକ୍ଷ କର |
| ୧୦ । | କାଳୀକଳ୍ପ | ଅଘୋର ନାରାୟଣ |
| ୧୧ । | ସୀତାପ୍ରେମ ତରଙ୍ଗିଣୀ | ନୀଳକଣ୍ଠ ରଥ |
| ୧୨ । | ଚର୍ଚ୍ଚିକା, ଅଂଶୁପା, ସିଂହନାଥ | ଜୟକୃଷ୍ଣ ମିଶ୍ର |
| ୧୩ । | ବାଙ୍କୀ କାବ୍ୟ | ନବକିଶୋର ମହାରଣା |
| ୧୪ । | ମହାନଦୀ କାବ୍ୟ········· | |
| ୧୫ । | ମହାଭାରତ········· | |
| ୧୬ । | କଳାଦ୍ରି ମହୋଦୟ········· | |
| ୧୭ । | ଚନ୍ଦ୍ରକଳ୍ପ | ମହାପୁରୁଷ ଅଚ୍ୟୁତାନନ୍ଦ |
| ୧୮ । | ମାଦଳା ପାଞ୍ଜି | ଡଃ. ଆର୍ତ୍ତବଲ୍ଲଭ ମହାନ୍ତି |
| ୧୯ । | ସୂର୍ଯ୍ୟ ସବନ୍ଧ········· | |
| ୨୦ । | ଚର୍ଚ୍ଚିକା ପତ୍ରିକା | ୧୯୯୫ |
| ୨୧ । | ଆଶ୍ଚର୍ଯ୍ୟ ଚର୍ଯ୍ୟାଚୟ | ଡଃ. କରୁଣାକର କର |
| ୨୨ । | ଶଶୀରେଖା | ରାଜା ପଦ୍ମନାଭ ଶ୍ରୀଚନ୍ଦନ |
| ୨୩ । | ନଶାମଣି ଚୌତିଶା ଓ ଚୌପଦି | ରାଜା ବ୍ରଜବିହାରୀ ଶ୍ରୀଚନ୍ଦନ |

| | | |
|---|---|---|
| ୨୪ । | ମହିମାମଣି ସ୍ମୃତି | ରାଜା ପିତାମ୍ବର ଶ୍ରୀଚନ୍ଦନ |
| ୨୫ । | ଫିରିଙ୍ଗି କଳି ଭାରତ | ଅର୍ଜ୍ଜୁନ ଯୋଷି |
| ୨୬ । | ବିବଧ ସାର ସଗ୍ରହ | ଲଲନଗେନ୍ଦ୍ର କୁମାର ରାୟ |
| ୨୭ । | ଓଡ଼ିଆ ସାହିତ୍ୟର ଇତିହାସ | ପଣ୍ଡିତ ବିନାୟକ ମିଶ୍ର |
| ୨୮ । | ଓଡ଼ିଆ ସାହିତ୍ୟର ଇତିହାସ | ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ |
| ୨୯ । | ମୁକୁନ୍ଦଦେବ | କବିଶେଖର ଚିନ୍ତାମଣି |
| ୩୦ । | ରତ୍ନକୋଷ | ଭଗୀରଥି ମହାପାତ୍ର |
| ୩୧ । | ଭାଷାକୋଷ | ଗୋପାଳ ଚନ୍ଦ୍ର ପ୍ରହରାଜ |
| ୩୨ । | ଓଡ଼ିଶାରେ ବୌଦ୍ଧଧର୍ମ | ନବୀନ କୁମାର ସାହୁ |
| ୩୩ । | ରାଧାନାଥ ଗ୍ରନ୍ଥାବଳୀ | କବିବର ରାଧାନାଥ ରାୟ |
| ୩୪ । | ସ୍ମୃତି ଚିନ୍ତାମଣି ( ଆର୍ତ୍ତବଲ୍ଲଭଙ୍କ ସମ୍ପାଦିତ ) | ଧାମନଗୋଇ |
| ୩୫ । | ନିମ୍ନ ପ୍ରାଥମିକ ଇତିହାସ | ଗଗନ ଚନ୍ଦ୍ର ଦାଶ |
| ୩୬ । | ଉତ୍କଳ ଅତି ପ୍ରାଚୀନ | ଲକ୍ଷ୍ମୀନାରାୟଣ ଷଡ଼ଙ୍ଗୀ |



## ❊ କବିଙ୍କ ପ୍ରକାଶିତ ପୁସ୍ତକାବଳୀ ❊

ଶୈଶବରେଣୁ, ଟର୍ଚ୍ଚିକା ମହାତ୍ମା, ରାଜା ହରିଶ୍ଚନ୍ଦ୍ର, ରକ୍ତଭୋଗ
ରାଣୀ ଶୁକଦେଈ ।

## -❊ ଅପ୍ରକାଶିତ ପୁସ୍ତକାବଳୀ ❊-

ବାଙ୍କୀ ଇତିହାସ— ପଣ୍ଡିତ ଗୋବିନ୍ଦ ରଥଙ୍କ ଜୀବନୀ
ନୀଳମଣି ବିଦ୍ୟାରତ୍ନଙ୍କ ଜୀବନୀ
କବି ନଟବର ଧଳସାମନ୍ତଙ୍କ ଜୀବନୀ
ରାମଅମୃତ, ସାବିତ୍ରୀ, ଧ୍ରୁବ, ବାଙ୍କୀ କାବ୍ୟ, ଚଣ୍ଡୀ ପଲ୍ଲବିନୀ

## କୃତଜ୍ଞତା ପୃଷ୍ଠାରୁ

ଆକାଶ ଯେସନେ ପ୍ରାଣ ଉଚ୍ଛୁରେ ଜଳକଣା କରେ ଦାନ ।
ବାଦଲ ବସାରେ ହୃଦୟ ପ୍ରସାରେ ଡାକିବାକୁ ରସପୂର ॥
ଶସ୍ୟ ଉପୁଜାଇ ବିଶ୍ୱରେ ମଜାଇ ଯାଏ କାହିଁ ସତ ହଜି ।
ତେସନେ କବୀନ୍ଦ୍ର କଦମ୍ବ ସଜାଇ ଜନମନ ଲୋଭେଇଲାକି ॥

ସତ୍ ସାହିତ୍ୟିକ ସୁହୃଦବରେଷୁ ଡାନଗର ବି. କେ. ବିଦ୍ୟାପୀଠର ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ଭୁବନେଶ୍ୱର ପ୍ରଧାନ, ଚିରପ୍ରତିମ ମୁଖଶାବିପ୍ରଲକ, ଶ୍ରୀଯୁକ୍ତ ଚତୁର୍ଭୁଜ ମହାପାତ୍ର ତଥା ସାଧୁକବି ଗୁରୁ ଗୋବିନ୍ଦ ଚନ୍ଦ୍ର ରାଜ ଏବଂ ସାହିତ୍ୟ ବିଶାରଦ ଗୋବିନ୍ଦ ରଥଙ୍କ ନାତି ବାସୁଦେବ ରଥ, କବି ଗଙ୍ଗାଧରଙ୍କ ବିଷ୍ଣୁଚକ୍ରପୋଷକ ବ୍ରଜମୋହନ ପଣ୍ଡା ଓ ନୀଳମଣି ବିଦ୍ୟାରତ୍ନଙ୍କ ତୁଲ୍ୟ ମୋ ଭାଷା ସାହିତ୍ୟ ଗଢ଼ିବାର ପରମ ପୂଜାରୀ ଶ୍ରୀଯୁକ୍ତ ଶରତ ଚନ୍ଦ୍ର ମହାପାତ୍ର ଓ ଆନ୍ତରିକ ହୃଦପୁର ପ୍ରସାଦ ଭାଇଙ୍କ ନିକଟରେ ଚିରକୃତଜ୍ଞତାର କବିତା କୁସୁମ ଶ୍ରଦ୍ଧାଞ୍ଜଳିରେ ଦେଉଛି ॥

**କବିକେଶରୀ**

*Printed at :-* Maharshi Printing Press, College Square, Banki.